# ଆଚାର୍ଯ୍ୟ ପ୍ୟାରୀମୋହନ

ଶ୍ରୀ ଭଗବତ ପ୍ରସାଦ ମହାନ୍ତି
ଶିକ୍ଷକ, ପି. ଏମ୍. ଏକାଡେମୀ,
କଟକ-୨

ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦ ବିହାରୀ, କଟକ-୨

# ଅଗ୍ରୂର୍ଘ୍ୟ ପ୍ୟାରୀମୋହନ

ଲେଖକ :

**ଶ୍ରୀ ଭଗବତ ପ୍ରସାଦ ମହାନ୍ତି**

ପ୍ରକାଶକ :

**ସହଦେବ ପ୍ରଧାନ**

ଫ୍ରେଣ୍ଡସ୍ ପବ୍ଲିଶର୍ସ

ବିନୋଦବିହାରୀ

କଟକ ୭୫୩୦୦୨

ଚତୁର୍ଥ ସଂସ୍କରଣ

୧୯୮୫

ମୁଦ୍ରାକର :

**ରାଜକିଶୋର ସିଂହ**

ନନ୍ଦକିଶୋର ପ୍ରେସ

ଓଡ଼ିଆବଜାର ଡଗରପଡ଼ା

କଟକ-୨

**ମୂଲ୍ୟ ଟ ୨-୫୦**

# ଅଭିମତ

ଆଚାର୍ଯ୍ୟ ପ୍ୟାରୀମୋହନଙ୍କ ବିଷୟରେ ଊଣାଅଧିକ ସମସ୍ତେ କିଛି କିଛି ଜାଣନ୍ତି । ଶିକ୍ଷା ଓ ସମାଜର ଉନ୍ନତି ପାଇଁ ସେ ଅଦମ୍ୟ ଚେଷ୍ଟାକରି ଯାହା କରି ଯାଇଛନ୍ତି ଆଜି ଓଡ଼ିଆ ଜାତି ସେଥିପାଇଁ ଗର୍ବ ଅନୁଭବ କରିବାର କଥା । ଜୀବନସାରା କଠିନ ପରିଶ୍ରମ କରି ସେ ଯେଉଁ ତ୍ୟାଗ ମନୋଭାବ ସହିତ ନିଜର କର୍ତ୍ତବ୍ୟ କରିଯାଇଛନ୍ତି ତାହା ପ୍ରତ୍ୟେକଙ୍କର ଜାଣିବାର କଥା । ଆଜି ଯେଉଁ ଶିକ୍ଷାନୁଷ୍ଠାନ ସହରର କେନ୍ଦ୍ରସ୍ଥଳରେ ଅବସ୍ଥିତ ତାହା ଏହି ମହାପୁରୁଷଙ୍କର ଅବଦାନ । ପ୍ୟାରୀମୋହନ ଏକାଡେମୀର ସହକାରୀ ଶିକ୍ଷକ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି, ଆଚାର୍ଯ୍ୟ ମହାଶୟଙ୍କ ବିଷୟରେ ଗଭୀର ଅନୁଧ୍ୟାନ କରି ତାଙ୍କ ଜୀବନର ଏକ ଧାରାବାହିକ ଜ୍ଞାତବ୍ୟ ବିଷୟ ଲେଖିଥିବା ପାଣ୍ଡୁଲିପି ମୁଁ ଭଲ ଭାବରେ ପଢ଼ିଛି । ଏଥିରୁ ପିଲାମାନଙ୍କର ଯଥେଷ୍ଟ ଶିକ୍ଷା କରିବାର ଅଛି । ଭାଗବତ ବାବୁ ଜଣେ ପ୍ରବୀଣ ଶିକ୍ଷକ ଓ ଶିକ୍ଷା କ୍ଷେତ୍ରରେ ତାଙ୍କର ଯଥେଷ୍ଟ ଅଭିଜ୍ଞତା ରହିଅଛି । ମୋର ଆଶା ଓ ବିଶ୍ୱାସ, ଏହି ଲେଖାଟି ପ୍ରତ୍ୟେକଙ୍କୁ ଆଚାର୍ଯ୍ୟ ମହାଶୟଙ୍କ ବିଷୟରେ ସବିଶେଷ ବିବରଣୀ ଜାଣିବାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ସେହିପରି କାର୍ଯ୍ୟ କରିବା ପାଇଁ ଅନୁପ୍ରାଣିତ କରିବ । ଇତି ।

**ଶ୍ରୀ କିଶୋର ଚନ୍ଦ୍ର ଦାସ**

ଶ୍ରୀଗୁଣ୍ଡିଚା    ଏମ୍. ଏ. (ଡବଲ୍) ଇଡ଼ି. ଏସ୍. ଏ.

ଅଧ୍ୟାପକ, ରାଧାନାଥ ଟ୍ରେନିଂ କଲେଜ

ତା ୯ । ୭ । ୭୭

ଏହି କ୍ଷୁଦ୍ର ପୁସ୍ତିକା "ଆଶ୍ଚର୍ଯ୍ୟ ପ୍ୟାରୀମୋହନ"ଟିକୁ ମୋର ଜୀବନର ସଙ୍ଗୀନ ତଥା ଅଲିଅଳି କନ୍ୟା ଶ୍ରୀମନ୍ତୀ ଆରତୀର ହାତରେ ଶ୍ରଦ୍ଧାର ସହିତ ଅର୍ପଣ କଲି ।

ଶୁଭାନୁଧ୍ୟାୟୀ

**ବାପା,**

# କୃତଜ୍ଞତା

ସାହିତ୍ୟ କ୍ଷେତ୍ରରେ ସବୁଠୁ ବଳି ଆତ୍ମଜୀବନୀ ପାଠ କରିବାରେ ଅଧିକ ସନ୍ତୋଷ ମିଳେ ଏହା କହିବା ବୋଧହୁଏ ଅସମୀଚିନ ହେବ ନାହିଁ । ଆତ୍ମଜୀବନୀ ମାନବସମାଜକୁ ଆଣିଦିଏ କର୍ମପ୍ରେରଣା, ଉତ୍ସାହ ତଥା ଉଦ୍ଦୀପନା । ଯେ କୌଣସି ବୀରପୁରୁଷମାନଙ୍କର ସତ୍ୟାନୁସନ୍ଧାନମୂଳକ ଜୀବନୀ ଆଲୋଚନାରୁ ମଧ୍ୟ ଆମେ ପାଇଥାଉ ଆମର ଭବିଷ୍ୟତ ସୁଚିନ୍ତିତ କର୍ମମୟ ଜୀବନର ପ୍ରେରଣା ।

ଏ ଜାତି, ଏ ଭାଷା, ଏ ସାହିତ୍ୟ ଆଜି ଯଦି ବଞ୍ଚି ରହିଥାଏ ତେବେ ସେହିପରି ଆମର କେଇଜଣ ବୀର ଓଡ଼ିଆ ସନ୍ତାନମାନଙ୍କ ପାଇଁ । ଏହି ସନ୍ତାନମାନଙ୍କ ମଧ୍ୟରୁ ଆଚାର୍ଯ୍ୟ ପ୍ୟାରୀମୋହନଙ୍କ ତ୍ୟାଗ, ବୀରତ୍ୱ, ସହିଷ୍ଣୁତା, କର୍ମପ୍ରେରଣା ତଥା ଦେଶସେବା ଯେ କେତେଦୂର ଆମ ଦେଶବାସୀଙ୍କର ସମ୍ବଳ ହୋଇପାରିଛି ସେଗୁଡ଼ିକ ପ୍ରକାଶ କରିବାକୁ ଯାଇ "ଆଚାର୍ଯ୍ୟ ପ୍ୟାରୀମୋହନ" ହେଉଛି ତାର ଜ୍ୱଳନ୍ତ ନମୁନା । ଏହା ଜନସେବା ଦିଗରେ କେତେଦୂର ବ୍ରତୀହେବ ତାହା ଦେଶର ସୁଧୀବୃନ୍ଦ ବିଚାର କରିବେ ।

ଆଜିର ମୋର ସେହି ପୂଜ୍ୟ ଏବଂ ନମସ୍ୟ ବ୍ୟକ୍ତି ସ୍ୱର୍ଗୀୟ ପ୍ୟାରୀମୋହନଙ୍କୁ ବିନମ୍ର ନିବେଦନ, ସେ ସ୍ୱର୍ଗରେ ଥାଇ ମଧ୍ୟ ଦେଶର ତଥା ଜାତିର କଲ୍ୟାଣ ପାଇଁ ଶୁଭଦୃଷ୍ଟି ରଖିଥାନ୍ତୁ ଏତିକି ମୋର ତାଙ୍କ ପାଦପଦ୍ମରେ ଆନ୍ତରିକ କାମନା ।

ଏ କ୍ଷୁଦ୍ର ପୁସ୍ତିକାଟି ଲେଖିବା ପୂର୍ବରୁ ମୋର ମାନ୍ୟାସ୍ପଦ ତଥା ସୌଜନ୍ୟମୁଗ୍ଧ ଶ୍ରୀଯୁକ୍ତ ଶାନ୍ତନୁକୁମାର ଦାସ, ଗ୍ରାମମଙ୍ଗଳ

ସଚିବ, ଓଡ଼ିଶା, ମୋତେ ଏ କ୍ଷୁଦ୍ର ପୁସ୍ତିକାଟି ପ୍ରକାଶ କରିବା ଦିଗରେ ଯେଉଁ ପ୍ରେରଣା ଦେଇଛନ୍ତି ସେଥିପାଇଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ଏବଂ ମୋର ପୂଜ୍ୟପାଦ ଗୁରୁଦେବ ଶ୍ରୀଯୁକ୍ତ କିଶୋରଚନ୍ଦ୍ର ଦାସ, ଅଧ୍ୟାପକ, ରାଧାନାଥ ଟ୍ରେନିଂ କଲେଜ, ମୋତେ ଏ ଦିଗରେ ଯେଉଁ ଉତ୍ସାହ ଏବଂ ପ୍ରେରଣା ଦେଇଛନ୍ତି ତାହା ମୋ ପକ୍ଷେ ଶୁଭାଶୀର୍ବାଦ । ଏଣୁ ମୁଁ ତାଙ୍କ ନିକଟରେ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଚିରଦିନ ପାଇଁ ଏହିଭଳି ମୋ ଉପରେ ଶୁଭଦୃଷ୍ଟି ରଖିବେ ଏତିକି ପ୍ରାର୍ଥନା ।

ଏତଦ୍ ବ୍ୟତୀତ ମୋର ଶୁଭାନୁଧ୍ୟାୟୀ ତଥା ସମ୍ମାନାସ୍ପଦ ଶ୍ରୀ ପ୍ରାଣବନ୍ଧୁ କର ଓ ମୋର ସହକର୍ମୀ ଶ୍ରୀ ହରିଗ୍ରାହୀ ଭୂୟାଁ ମୋତେ ଏ କ୍ଷୁଦ୍ର ପୁସ୍ତକ ଖଣ୍ଡିକ ସମ୍ପାଦନା ଦିଗରେ ବିଶେଷ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଚିର କୃତଜ୍ଞ ।

ବିନୀତ

**ଲେଖକ**

ଆଜ ପର୍ଯ୍ୟନ୍ତ ଉତ୍କଳମାତାର କୋଳରେ ଗୋପବନ୍ଧୁ, ସୁଭାଷଚନ୍ଦ୍ର ଓ ମଧୁସୂଦନଙ୍କ ଭଳି ଯେତେଗୁଡ଼ିଏ ସୁଯୋଗ୍ୟ ସନ୍ତାନ ଜନ୍ମଲାଭ କରି ଗଲେଣି ଏବଂ ସେମାନେ ଏ ଦେଶରେ ଯେଉଁ ସବୁ ଅକ୍ଷୟ କୀର୍ତ୍ତି ଅର୍ଜ୍ଜନ କରିଯାଇ ଅଛନ୍ତି; ତନ୍ମଧ୍ୟରେ ପୁଣ୍ୟାତ୍ମା ପ୍ୟାରୀମୋହନ ହେଉଛନ୍ତି ଅନ୍ୟତମ ।

ସ୍ୱର୍ଗୀୟ ଭକ୍ତକବି ମଧୁସୂଦନ ରାଓ ଲେଖିଯାଇ ଅଛନ୍ତି—

"ବାଲ୍ୟକାଳୁ ଧର୍ମ୍ମ ଧନ ମୁଁ ସଞ୍ଚିବ
ଏ ଜୀବନ ଅନିଶ୍ଚିତ

କେ ଜାଣେ କାହାର ଆଜ ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।

କ୍ଷୁଦ୍ର କୀଟ ଉଇ ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ ଘର

ମୁହିଁ ସେହିପରି ସଞ୍ଚିବ ଯତନେ
ପୁଣ୍ୟଧନ ନିରନ୍ତର ।"

କବିଙ୍କର ଲେଖନୀମୁଖରୁ ଭାବଧାରା ବାସ୍ତବିକ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରମାଣିତ ହୋଇଛନ୍ତି ସ୍ୱର୍ଗୀୟ ପ୍ୟାରୀମୋହନଙ୍କ ଜୀବନକାଳ ମଧ୍ୟରେ । କଥାରେ ଅଛି—

"ଜୀବନ ପାଣିଫୋଟକା ପରି
ଆଜ ପରେ କାଲ ଯିବରେମିଳାଇ
ଭୁଖି ନ ପାରବୁ ତାହାକୁ ଧରି ।

ପ୍ରକୃତରେ ମନୁଷ୍ୟର ଜୀବନଟାଠିକ୍ ପାଣି ଫୋଟକା ସଦୃଶ୍ୟ । କେତେବେଳେ ମନୁଷ୍ୟର ଜୀବନ ବୁଲିଯିବ ତାହା କେହି କହି ପାରିବ ନାହିଁ । ଜୀବନଟା ଯିବାବେଳେ ମଧ୍ୟ ତାହାକୁ କେହି ଅଟକାଇ ରଖିପାରିବ ନାହିଁ । ମନୁଷ୍ୟ ଭଲ ଭାବରେ ଏହା ଜାଣି ଶୁଣି ମଧ୍ୟ ମାୟା-ସଂସାରର ଜଞ୍ଜାଳ ମଧ୍ୟରେ ବୁଡ଼ି ରହିବା ଫଳରେ ସବୁକିଛି ଭୁଲି ଯାଇଥାଏ ଏବଂ ଲୋଭ ଓ ମୋହର ବଶବର୍ତ୍ତୀ ହୋଇ ସମସ୍ତଙ୍କୁ ନିଜର ଆୟତ୍ତାଧୀନ କରିବାକୁ ଇଚ୍ଛା ପ୍ରକାଶ କରେ । ଯେତେ ପାଇଲେ ମଧ୍ୟ ମନୁଷ୍ୟ ସବୁବେଳେ ତାର ଉଚ୍ଚଆଶା ପୋଷଣ କରିଥିବାର ଦେଖାଯାଏ ।

କିନ୍ତୁ ପ୍ରକୃତରେ ଯେଉଁମାନେ ଯୋଗୀ ଓ ସିଦ୍ଧପୁରୁଷ ଯେଉଁମାନଙ୍କର ଉଦ୍ଦେଶ୍ୟ ଥାଏ ଭିନ୍ନପ୍ରକାର । ସେମାନେ ଲୋଭ, ମୋହ, ମାୟା ଓ ମମତାର ବଶବର୍ତ୍ତୀ ନ ହୋଇ ସର୍ବଦା ତାହାଠାରୁ ଦୂରରେ ରହନ୍ତି । ଏଣୁ ସେମାନଙ୍କର ଜୀବନଧାରଣ ପ୍ରଣାଳୀ ସଦାସର୍ବଦା ସତ୍ ମାର୍ଗରେ ପରିଚାଳିତ ହୋଇଥାଏ ।

ବାଲ୍ୟଜୀବନରୁ ସ୍ୱର୍ଗୀୟ ପ୍ୟାରିମୋହନ ନିଜର ମାତୃଭୂମି ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ଦେଖାଇବା ସଙ୍ଗେ ସଙ୍ଗେ ନିରଳସ ଓ କର୍ମଠତାର ପରିଚୟ ସ୍ୱରୂପ ସେ ଯେଉଁ ସୁଖ୍ୟାତି ଅର୍ଜ୍ଜନ କରିଯାଇ ଅଛନ୍ତି ତାହା ଓଡ଼ିଶା ଇତିହାସରେ ଚିରକାଳ ଧରି ଲିପିବଦ୍ଧ ହୋଇ ରହିବ ଏଥିରେ ସନ୍ଦେହ ନାହିଁ ।

ସ୍ୱର୍ଗୀୟ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ—
"ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

ସ୍ୱର୍ଗତ ପ୍ୟାରୀମୋହନଙ୍କର ଆଦର୍ଶ ଜୀବନକୁ ଯଦି ଆମେ ବର୍ଷ, ମାସ, ଦିନ ଓ ଦଣ୍ଡ ହିସାବରେ ଗଣନା କରୁ ତା' ହେଲେ ମଧ୍ୟ ସେହି ଅଳ୍ପ ସମୟ ଭିତରେ ତାଙ୍କର ସ୍ୱଦେଶପ୍ରୀତିର ଯଥେଷ୍ଟ ଉଦାହରଣ-ମାନ ଆମେ ଦେଖିବାକୁ ପାଇବା । ଏତେ ଅଳ୍ପକାଳ ସଂସାରରେ ବଞ୍ଚି ରହି ଏତେ ଗୁଡ଼ଏ ସୁନାମର ଅଧିକାରୀ ହୋଇପାରିବା ସମସ୍ତଙ୍କ ଭାଗ୍ୟରେ ଯୁଟିବା ଅସମ୍ଭବ ।

ପ୍ୟାରୀମୋହନ ବାଲ୍ୟାବସ୍ଥାରୁ ଖୁବ୍ ଭଲ ଭାବରେ ବୁଝିଥିଲେ ଯେ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ହେଉଛି ମୂଲ୍ୟବାନ । ମନୁଷ୍ୟ କେତେଦିନ ଅବା ଦୁନିଆରେ ବଞ୍ଚିରହିବ, ତାହା କେହି କହିପାରିବ ନାହିଁ । ସେଥିପାଇଁ ପ୍ୟାରୀମୋହନ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ସେ ଅଯଥାରେ ନ କଟାଇ ଦେଶ ତଥା ଜାତିର କଲ୍ୟାଣ ସାଧନ ଦିଗରେ ସର୍ବଦା ଚେଷ୍ଟିତ ଥିଲେ ।

ପରଲୋକଗତ ପୁଣ୍ୟାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ଜୀବନୀ ନାନା ଅଲୌକିକ ଘଟଣାବଳୀରେ ପରିପୂର୍ଣ୍ଣ । ସାଧାରଣ ଲୋକଙ୍କ ଜୀବନକାଳ ମଧ୍ୟରେ ଏପରି ଘଟଣା ଘଟିବା କେବେହେଲେ ସମ୍ଭବପର ହୋଇପାରି ନାହିଁ । ପୁଣ୍ୟାତ୍ମା ପ୍ୟାରୀମୋହନ ଧରାଧାମରେ ମାତ୍ର ୨୯ ବର୍ଷ ୫ ମାସ ଜୀବିତ ଥିଲେ । ତାଙ୍କର ତେଜସ୍ୱୀ ମନୋଭାବ, କର୍ମପ୍ରବଣତା, ବିଚକ୍ଷଣତା, ନିର୍ଭିକତା ତଥା ଉଚ୍ଚ ଆଶା ଆକାଙ୍କ୍ଷାର

ଯେଉଁ ଘଟ୍ତ ସେ-ଦେଖାଇ ଯାଇଛନ୍ତି; ତାହା ଓଡ଼ିଶାବାସୀଙ୍କ ପକ୍ଷରେ ଅତୁଳନୀୟ ଓ ଚିରଦିନ ଧରି ଅନୁକରଣ ଯୋଗ୍ୟ ହେବ ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ।

## ଜନ୍ମ ଏବଂ ବଂଶ ପରିଚୟ—

ପୁଣ୍ୟାତ୍ମା ପ୍ୟାରୀମୋହନଙ୍କର ଜନ୍ମ କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଥାନାଗର ପ୍ରଗଣାର କୁଆଁପାଳ ନିକଟବର୍ତ୍ତୀ ପଣ୍ଡୁଲି ଗ୍ରା ମୌଜାରେ । ପୁରୀର ରାଜା ରାମଚନ୍ଦ୍ର ଦେବଙ୍କ ୪୪ ଅଙ୍କ ଇଂରାଜୀ ସନ ୧୮୫୭ ମସିହା ଜୁଲାଇ ମାସ ଓଡ଼ିଆ ସନ ୧୨୬୦, ଶକାବ୍ଦ ଗଣନାରେ ୧୭୭୫ ଶ୍ରାବଣ ମାସ ଦ ୨୧ ନ ହେବ ।

ସ୍ୱର୍ଗୀୟ ଭୁବନମୋହନ ଆଚାର୍ଯ୍ୟ ପ୍ୟାରୀମୋହନଙ୍କର ପିତା । ସେ କଟକରେ ଓକିଲାତି ବ୍ୟବସାୟ କରୁଥିଲେ । ସେତେବେଳର ଓକିଲମାନଙ୍କ ମଧ୍ୟରେ ତାଙ୍କର ସୁନାମ ଯଥେଷ୍ଟ ଥିଲା । ସେ ଖୁବ୍ ଦକ୍ଷତାର ସହିତ କୋର୍ଟରେ ମାମଲା ଲଢ଼ି ଡିଗ୍ରୀ କରି ନେଇ ପାରୁଥିଲେ ।

ସ୍ୱର୍ଗୀୟ ଭୁବନମୋହନ ଆଚାର୍ଯ୍ୟ ବଙ୍ଗୀୟ ବ୍ରାହ୍ମଣ ଥିଲେ । ତାଙ୍କର ପୂର୍ବପୁରୁଷ ବଙ୍ଗ ଦେଶରୁ ଆସି ଆମ ଓଡ଼ିଶାରେ ବସବାସ କରିଥିଲେ । ଏହା ପ୍ରାୟ ଖ୍ରୀଷ୍ଟାବ୍ଦ ଚତୁର୍ଦ୍ଦଶ ଶତାବ୍ଦୀର କଥା । ତାଙ୍କର ପୂର୍ବପୁରୁଷ କ୍ରମେ ଓଡ଼ିଶାରେ ସ୍ଥାୟୀଭାବରେ ବସତିସ୍ଥାପନ କରି ରହିଥିଲେ ।

ଭୁବନମୋହନ ଆଚାର୍ଯ୍ୟଙ୍କର ଚାରିଗୋଟି ପୁତ୍ର ଥିଲେ । ପ୍ୟାରୀମୋହନ, ଦ୍ୱାରିକାନାଥ, ଚନ୍ଦ୍ରମୋହନ ଓ କାଳୀଚରଣ । ସେ ହେଉଛନ୍ତି ବଡ଼ ଭାଗ୍ୟବାନ୍ ଚାରିଗୋଟି ସୁପୁତ୍ରର ବାପ

ହୋଇ ପାରିଥିଲେ । ଦ୍ୱାରକାନାଥ, ପାଠପଢ଼ି ଜଣେ ମୋକ୍ତାର ହୋଇଥିଲେ । ପିତାଙ୍କ ପରି ଆଇନ୍ ବ୍ୟବସାୟରେ ସେ ମୁରବି ଥିଲେ । ୧୮୮୭ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ଘଟିଥିଲା ।

ତାଙ୍କର ଅନ୍ୟତମ ପୁତ୍ର ଚନ୍ଦ୍ରମୋହନ ଡାକ୍ତରୀପାଠ ପଢ଼ି ଜଣେ ସୁଦକ୍ଷ ଡାକ୍ତର ହୋଇ ପାରିଥିଲେ । ଡାକ୍ତରୀ ବିଦ୍ୟାରେ ମଧ୍ୟ ସେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ଡାକ୍ତର ମହଲରେ ତାଙ୍କର ଯଥେଷ୍ଟ ସୁନାମ ମଧ୍ୟ ଥିଲା । ସେ ଗରିବ ରୋଗୀମାନଙ୍କଠାରୁ ପଇସା କଉଡ଼ି ପାଇବାର ଆଶା ନ ରଖି ତାଙ୍କୁ ଭଲ କରୁଥିଲେ । ସେ ୧୮୮୨ ମସିହାରେ ମାନବଲୀଳା ସମ୍ବରଣ କଲେ ।

ଅନ୍ୟ ଏକ ପୁତ୍ର କାଳୀଚରଣ ତାଙ୍କ ମାମୁ ଘରକୁ ଜ୍ୟେଷ୍ଠ ପୁତ୍ର ହୋଇ ଯାଇଥିଲେ । ତାଙ୍କର ମାମୁଁଘର କଟକ ଜିଲ୍ଲା ଅନ୍ତର୍ଗତ କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଡେରାବିଶ ନିକଟବର୍ତ୍ତୀ ଏଣ୍ଡର ମୌଜାରେ । ତାହାଙ୍କ ବିଷୟରେ ସେପରି ଉଲ୍ଲେଖଯୋଗ୍ୟ ଖବର କିଛି ନାହିଁ । ସେ ୧୯୧୪ ମସିହାରେ ମୃତ୍ୟୁବରଣ କଲେ ।

"ପିତା ମାତା ସୁକୃତିରୁ ପୁତ୍ର ହୁଏ ସୁଖୀ"

ପ୍ରକୃତରେ ଏ କଥା ସତ୍ୟ ବୋଲି ପ୍ରମାଣ ହୋଇଛି ଭୁବନମୋହନ ଆଚାର୍ଯ୍ୟଙ୍କ ନିକଟରେ । ବର୍ତ୍ତମାନ ସ୍ୱର୍ଗୀୟ ଭୁବନ ମୋହନଙ୍କର ଅନ୍ୟ ଏକ ପୁତ୍ର ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଜୀବନର ଅବଲମ୍ବନରେ ଏହି କ୍ଷୁଦ୍ର ପୁସ୍ତିକାଟି ରୂପନେବାକୁ ଯାଉଛି ।

ସାଧାରଣଙ୍କର ଧାରଣା, ଯେଉଁ ବ୍ୟକ୍ତି ଖୁବ୍ ଅଳ୍ପଦିନ ମଧ୍ୟରେ ସ୍ୱଳ୍ପାୟୁରେ ଅଦ୍ଭୁତ ପ୍ରକାର କାର୍ଯ୍ୟ ସାଧନ କରିବାରେ ସକ୍ଷମ

ହୋଇପାରେ, ସେ ଲୋକ ଅଳ୍ପାୟୁ । ସେହି ପୁରୁଷ ସଂସାର କ୍ଷେତ୍ରରେ ବେଶିଦିନ ବଞ୍ଚି ରହି ପାରନ୍ତି ନାହିଁ । ତେଣୁ ତାଙ୍କୁ କ୍ଷଣଜନ୍ମା ପୁରୁଷ ବୋଲି ଲୋକେ କହନ୍ତି ।

ପୁଣ୍ୟାତ୍ମା ପ୍ୟାରୀମୋହନଙ୍କ ଜୀବନୀ ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ ସେ ପ୍ରକୃତରେ ଜଣେ କ୍ଷଣଜନ୍ମା ପୁରୁଷ ଥିଲେ । ତାଙ୍କର ନିର୍ଭିକତା, ଉଦାରତା, କର୍ମଠ ତଥା ତାଙ୍କର ଦେଶ ସେବା ତାଙ୍କୁ ଏତେ ଉଚ୍ଚ ଆସନ ଯେ ଦେଇପାରିଲା, ତାହା କଳ୍ପନାତୀତ ।

ପୁଣ୍ୟାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ଜନ୍ମ ୧୭୭୫ ଶକାବ୍ଦ ଶ୍ରାବଣ ମାସ ଦି୨୧ନ ଓଡ଼ିଆ ସାଲ ୧୨୬୦, ୧୮୫୨ ମସିହା ଜୁଲାଇ ମାସରେ । ୧୮୮୧ ମସିହା ଡିସେମ୍ବର ମାସ ୨୮ ତାରିଖରେ ଓଡ଼ିଆ ସନ ମୁତାବକ ୧୨୮୯ ପୌଷ ମାସର ୧୫ ଦିନ ବୁଧବାର କଟକ ସହରସ୍ଥିତ ତାଙ୍କର ଗଙ୍ଗାମନ୍ଦିର ବାସଭବନରେ ମୃତ୍ୟୁ ହୋଇଥିଲା । ସେ ମାତ୍ର ୨୯ ବର୍ଷ ୫ ମାସ ମୋଟ ଉପରେ ବଞ୍ଚିଥିଲେ ବୋଲି ପୂର୍ବରୁ କୁହାଯାଇଛି । ପ୍ରକୃତରେ ଆଉ କେତୋଟି ଦିନ ମାତ୍ର ସେ ଅଧିକ ବଞ୍ଚିଥିଲେ ବୋଲି ପୂର୍ବରୁ କୁହାଯାଇଛି । (୧୮୫୨ ମସିହା ଜୁଲାଇ ମାସ କେତେ ତାରିଖ ହେବ, ଯଦି ଓଡ଼ିଆ ହିସାବମତେ ସେହି ବର୍ଷ ଶ୍ରାବଣ ମାସର ୨୨ ଦିନ ହୋଇଥାଏ । )

ଏହିପରି ଜଣେ କ୍ଷଣଜନ୍ମା ଅଳ୍ପାୟୁ ବ୍ୟକ୍ତିଙ୍କ ପାଇଁ କାହିଁକି ଯେ ଜନ୍ମଜାତକ ପ୍ରସ୍ତୁତ ହୋଇଥିଲା ତାହା ଚିନ୍ତାକଲେ ବିସ୍ମିତ ହେବାକୁ ପଡ଼େ । କିନ୍ତୁ ନିୟତିର ନିର୍ଦ୍ଧାରଣ ଅନ୍ୟରୂପ । କ୍ଷଣକର ସୌରଭରେ ପୁଷ୍ପ ଜଗତକୁ ଆମୋଦିତ କରେ । ଅଥଚ ଯୁଗ ଯୁଗ ଧରି ବଞ୍ଚି ରହିଥିବା ଗୁଳ୍ମ ମଧ୍ୟ ପୃଥିବୀରେ କୌଣସି ଖ୍ୟାତି ଗ୍ରନ୍ଥରେ

ରେଖାପାତ କରିପାରନ୍ତି ନାହିଁ । ତେଣୁ ଜନ୍ମାନ୍ତର ରହସ୍ୟ ଭେଦ କରିବା ମନୁଷ୍ୟ ଶକ୍ତିର ବହିର୍ଗତ । ତେବେ ସେ ଯାହାହେଉ, ପୁଣ୍ୟାତ୍ମା ପ୍ୟାରୀମୋହନ ତାଙ୍କର କ୍ଷୀଣ ଜୀବନକାଳ ମଧ୍ୟରେ ପୁଷ୍ପ ପରି ଯେଉଁ ସୌରଭ ବିତରଣ କରିଥିଲେ ତାହା ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଆଲୋଚିତ ହେବ ।

କଥିତ ଅଛି, ସ୍ୱର୍ଗୀୟ ଭୁବନାନନ୍ଦ ଆଚାର୍ଯ୍ୟ ପ୍ୟାରୀମୋହନ ତଥା ଅନ୍ୟ ତିନିଗୋଟି ପୁତ୍ରଙ୍କର ମୃତ୍ୟୁପରେ ସେ ଘୋର ଅନୁତାପ କରିବା ସଙ୍ଗେ ସଙ୍ଗେ ସମସ୍ତ ପୁତ୍ରମାନଙ୍କର ଜାତକକୁ ପୋଡ଼ି ପକାଇଥିଲେ ।

**ବାଲ୍ୟାବସ୍ଥା ଶିକ୍ଷା—**

ପୁଣ୍ୟାତ୍ମା ପ୍ୟାରୀମୋହନ ବାଲ୍ୟାବସ୍ଥାରେ ଶରୀର ସେପରି କିଛି ସୁସ୍ଥ ଓ ସବଳ ନ ଥିଲା । ତାଙ୍କର ଦେହ ଖୁବ୍ ପତଳା ଥିଲା । ଯଦିଓ ସେ କୁସ୍ତି କସରତ୍ କରୁ ନ ଥିଲେ ତଥାପି ମଧ୍ୟ ସେ ଦୁର୍ବଳ ନ ଥିଲେ । ସେ ଖୁବ୍ ଚତୁରମତି ଓ ମେଧାବୀ ଥିଲେ । ତା ଛଡ଼ା ସେ ଖୁବ୍ ଧୀରସ୍ଥିର ଏବଂ ପୂର୍ଣ୍ଣମାତ୍ରାରେ ତ୍ୟାଗୀ ଥିଲେ । କଷ୍ଟ ସହିଷ୍ଣୁତା ତାଙ୍କର ଅନ୍ୟ ଏକ ପ୍ରଧାନ ଗୁଣ ଥିଲା ।

ଅତି ପିଲାଦିନରୁ ତାଙ୍କଠାରେ ଏତେ ଭଲଗୁଣ ପୂରି ରହିଥିବାରୁ ଲୋକେ ଭାବୁଥିଲେ ଯେ ପିଆରି ବଞ୍ଚିଜାଇକି ରହିଲେ ଦେଶରେ ନାଆଁ କରିବ । ବାସ୍ତବିକ ଏତେଗୁଡ଼ାଏ ଭଲଗୁଣ ପିଲାଦିନରୁ ପ୍ରକାଶ ପାଇବା କ୍ୱଚିତ ପିଲାଙ୍କଠାରେ ଦେଖିବାକୁ ମିଳେ । ଯାହାହେଉନା କାହିଁକି, ପିଲାଦିନର ସୁଗୁଣ ଗୁଡ଼ିକ ତୁଳସୀ ଦୁଇପତ୍ରରୁ ବାସିବା ଭଳି ସାଧାରଣ ଲୋକଙ୍କ ମନକୁ ବିଶେଷ ଆକର୍ଷଣ କରିପାରିଥିଲା ।

ଅତି ବାଲ୍ୟାବସ୍ଥାରେ ପୁଣ୍ୟାତ୍ମା ପ୍ୟାରୀମୋହନଙ୍କର ପ୍ରାଥମିକ ଶିକ୍ଷା ବା ଚାଟଶାଳୀ ଶିକ୍ଷା ଆରମ୍ଭ ହୋଇଥିଲା । ସେତେବେଳର ଚାଟଶାଳୀ ଶିକ୍ଷକଙ୍କୁ ଅବଧାନ ବୋଲି କୁହାଯାଉଥିଲା । ସେହି ଅବଧାନେ ପ୍ୟାରୀମୋହନଙ୍କର ପ୍ରଥମ ଗୁରୁ ଥିଲେ । ମେଧାବୀ ଛାତ୍ର ହିସାବରେ ସେ ଗୁରୁଙ୍କ ଦ୍ୱାରା ଖୁବ୍ ଆଦୃତ ହେଉଥିଲେ । ଥରେ ଯାହାକୁ ସେ ମନ-ଯୋଗ ପୂର୍ବକ ଅଧ୍ୟୟନ କରୁଥିଲେ, ସେ ତାକୁ ମନେ ରଖି ପାରୁଥିଲେ । ତାଙ୍କୁ ଦ୍ୱିତୀୟଥର ପାଇଁ ସେ ବିଷୟ ପଢ଼ିବାକୁ ପଡ଼ୁ ନଥିଲା । ଏପରି ମେଧାବୀ ଛାତ୍ରଟିଏ ପାଇବା ଫଳରେ ଚାଟଶାଳୀର ଅବଧାନେ ଅତି ଆନନ୍ଦିତ ହେଉଥିଲେ ।

ପ୍ୟାରୀମୋହନ ଲୋୟର ପ୍ରାଇମେରୀ ଶିକ୍ଷା ସମାପ୍ତି ପରେ ଅଧିକ ଶିକ୍ଷାଲାଭ ପାଇଁ ଅପର ପ୍ରାଇମେରୀ ସ୍କୁଲରେ ନାମ ଲେଖାଇଲେ । ସେତେବେଳେ ତାଙ୍କର ବୟସ ୧୦ ବର୍ଷ । ସେଠାରେ ସେ ଖୁବ୍ ମନଦେଇ ପାଠ ପଢ଼ିଲେ । ବିଦ୍ୟାଳୟର ଗୁରୁଜୀଙ୍କର ପୂର୍ବପରି ଅତି ପ୍ରିୟଭାଜନ ହୋଇଥିଲେ । ଅପର ପ୍ରାଇମେରୀ କୃତିତ୍ୱର ସହିତ ପାସ କରିବା ପରେ ସେ କଟକ ଯାଇ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ ।

ସେତେବେଳକୁ ତାଙ୍କର ବୟସ ମୋଟେ ବାରବର୍ଷ । ସେ ଏହି ସ୍କୁଲରେ ଏକାଦିକ୍ରମେ ଛଅ ବର୍ଷ ପାଠ ପଢ଼ିଥିଲେ । ବିଦ୍ୟା ଓ ବୁଦ୍ଧିରେ ଏପରି ପ୍ରବୀଣ ଥିଲେ ଯେ ସ୍କୁଲର ଶିକ୍ଷକମାନେ ତାଙ୍କୁ ଅତି ସ୍ନେହ କରୁଥିଲେ । ଖୁବ୍ ଭଲ ପଢ଼ୁଥିବା ଦେଖି ଅନ୍ୟ ସାଙ୍ଗସାଥୀମାନେ ମଧ୍ୟ ତାଙ୍କୁ ଖୁବ ଆଦର କରୁଥିଲେ । ପିଲାମାନଙ୍କ ସହିତ ସେ ମିଳିମିଶି ପାରୁଥିଲେ । ତାଙ୍କଠାରେ ଏଭଳି ଭଲଗୁଣ ଥିଲା, ଯାହା ଅନ୍ୟ ପିଲାମାନଙ୍କ ମଧ୍ୟରେ ଦେଖିବାକୁ ଏକାବେଳକେ ସ୍ୱପ୍ନ । ତାଙ୍କ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ସବୁ କାର୍ଯ୍ୟରେ ସେ ଆଗୁଆ ହୋଇ ବାହାରି ପଡ଼ୁଥିଲେ ।

ସେ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକୁ ସେ ଆଗ୍ରହର ସହିତ ଗ୍ରହଣ କରି ତାହା ତୁଲାଇବାକୁ ସମର୍ଥ ହେଉଥିଲେ । ଶିକ୍ଷକ ମହାଶୟଙ୍କ ବ୍ୟତୀତ ନିଜର ସାଙ୍ଗସାଥିମାନଙ୍କଠାରୁ ମଧ୍ୟ କୌଣସି ଜଟିଳ ପରିସ୍ଥିତିରେ ପରାମର୍ଶ ନେଇ କାର୍ଯ୍ୟ କରୁଥିଲେ । ସ୍କୁଲର ସଭାସମିତି କାର୍ଯ୍ୟ ପଡ଼ିଲେ ଶ୍ରେଣୀର ମନିଟର ହିସାବରେ ଅନେକ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସେ ସୁରୁଖୁରୁରେ ତୁଲାଇ ଦେଇ ପାରୁଥିଲେ ।

## ପିଲାଦିନର ଦାୟିତ୍ୱ—

ଆମେ ଜାଣିଲେ ଆଶ୍ଚର୍ଯ୍ୟ ହେବା ଯେ ପ୍ୟାରୀମୋହନ ଯେତେବେଳେ ସ୍କୁଲରେ ଅଧ୍ୟୟନ କରୁଥିଲେ ସେତେବେଳେ ତାଙ୍କ ଗୃହରେ ଆଠ ଦଶଟି ପିଲା ରଖି ପଢ଼ାଉଥିଲେ । ସେହି ପିଲାମାନଙ୍କର ଖାଇବା ପିଇବା ଦାୟିତ୍ୱ ମଧ୍ୟ ସେ ବହନ କରୁଥିଲେ । ସାଧାରଣତଃ ପିଲା ବୟସରେ ଏପରି ଗୁରୁଦାୟିତ୍ୱ ବହନ କରିବା କେତେଜଣଙ୍କ ଠାରେ ଦେଖାଯାଏ ? ଏଭଳି ଅନେକ ଅସାଧାରଣ ଗୁଣ ତାଙ୍କଠାରେ ଦେଖିବାକୁ ମିଳୁଥିଲା ।

ଯାହାହେଉନା କାହିଁକି, କଟକ କଲେଜିଏଟ୍ ସ୍କୁଲରେ ପ୍ୟାରୀମୋହନ ଛଅ ବର୍ଷ ଅଧ୍ୟୟନ କରିସାରିବା ପରେ ଅଠର ବର୍ଷ ବୟସରେ ୧୮୭୦ ମସିହାରେ ସେ କୃତିତ୍ୱର ସହିତ ମାଟ୍ରିକୁ୍ୟଲେସନ୍ ପରୀକ୍ଷାରେ ପାସ୍ କରିଥିଲେ ।

## କଲେଜ ଶିକ୍ଷା—

କଟକରେ ଅବସ୍ଥିତ ଓଡ଼ିଶାର ବୃହତ୍ତମ ମହାବିଦ୍ୟାଳୟ ରେଭେନ୍‌ସା କଲେଜରେ ପ୍ୟାରୀମୋହନଙ୍କର କଲେଜ ଶିକ୍ଷା ଆରମ୍ଭ ହୋଇଥିଲା । ସ୍କୁଲର ଛାତ୍ରଜୀବନଠାରୁ କଲେଜ ଛାତ୍ରଜୀବନ

ଛନ୍ତି । କଲେଜ ଛାତ୍ରଜୀବନରେ ଅତି ସୁପରିଚିତ ଓ ସ୍ୱନାମଧନ୍ୟ ଲେଖକ ସ୍ୱର୍ଗୀୟ ମଧୁସୂଦନ ରାଓ ତାଙ୍କର ପରମବନ୍ଧୁ ଥିଲେ । ସ୍ୱର୍ଗୀୟ ପଣ୍ଡିତ ଗୋବିନ୍ଦ ରଥ ମଧ୍ୟ ତାଙ୍କର ଅନ୍ୟ ଏକ ସହଯୋଗୀ ଓ ଅତି ପ୍ରିୟ ବନ୍ଧୁ ଥିଲେ । ଏମାନଙ୍କର ପରିଚୟ ଏ କ୍ଷୁଦ୍ର ପୁସ୍ତିକାରେ ପରିବେଷଣ କରିବା ସମ୍ଭବପର ନୁହେଁ । ଚନ୍ଦ୍ରା ବ୍ରାହ୍ମଣର ଯେପରି ପଇତାରେ ଦରକାର ନାହିଁ; ସେହିପରି ଓଡ଼ିଶାର ଛାତ୍ରଛାତ୍ରୀମାନଙ୍କ ନିକଟରେ ସୁପରିଚିତ ସ୍ୱର୍ଗୀୟ ମଧୁସୂଦନଙ୍କ ପରିଚୟ ଏଠାରେ ପ୍ରକାଶ କରିବା ଦରକାର ନାହିଁ । କେବଳ ସ୍ୱର୍ଗୀୟ ପଣ୍ଡିତ ଗୋବିନ୍ଦ ରଥଙ୍କ ପରିଚୟ ଖୁବ୍ ଚୁମ୍ବକରେ କହିଲେ ଯଥେଷ୍ଟ ହେବ । ସ୍ୱର୍ଗୀୟ ପଣ୍ଡିତ ଗୋବିନ୍ଦ ରଥ ପ୍ୟାରୀମୋହନଙ୍କୁ ସ୍କୁଲ ଗଠନ କରିବା ଦିଗରେ ଅଧିକ ପ୍ରେରଣା ଓ ସାହାଯ୍ୟ କରିଥିଲେ ।

ପଣ୍ଡିତ ଗୋବିନ୍ଦ ରଥ ଅନେକ ଓଡ଼ିଆ ପୁସ୍ତକ ରଚନା କରି ଅବିସ୍ମରଣୀୟ ହୋଇଛନ୍ତି । ସେ ଜଣେ ତେଜସ୍ୱୀ ଓ ଉଚ୍ଚ ମନୋଭାବାପନ୍ନ ବ୍ୟକ୍ତି ଥିଲେ । ତା' ଛଡ଼ା ସେ ଅତି ସରଳ ପ୍ରକୃତିର ଲୋକ ଥିଲେ । ଯେ କୌଣସି ସମ୍ମାନାସ୍ପଦ ବ୍ୟକ୍ତିଙ୍କ ସହିତ କୌଣସି ତ୍ରୁଟିଜନିତ କାର୍ଯ୍ୟ ଉପରେ ଥଟ୍ଟା ଓ ବିଦ୍ରୂପ କରିପାରିବାରେ ତାଙ୍କର ଯଥେଷ୍ଟ ସାହସ ଥିଲା । ତା' ଛଡ଼ା ଧପାବାଜି, ରେଷ୍ଟି ଡକାଯୁଦ୍ଧ ଧରିବାରେ, ସାଧାରଣ କାର୍ଯ୍ୟ ଇତ୍ୟାଦିରେ ସାହସର ସହିତ କୃତକାର୍ଯ୍ୟ ହେବାରେ ସେ ଅତି ଧୂରନ୍ଧର ।

ଅନ୍ୟ ଏକ ମାନ୍ୟଗଣ୍ୟ ବ୍ୟକ୍ତି ସ୍ୱର୍ଗୀୟ ଦ୍ୱିଜେନ୍ଦ୍ରନାଥ ମଧ୍ୟ ପ୍ୟାରୀମୋହନଙ୍କର ଜଣେ ଅତି ପ୍ରିୟବନ୍ଧୁ ଥିଲେ । ସେ ବି ପ୍ୟାରୀମୋହନଙ୍କୁ ସ୍କୁଲ ଗଠନ କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିବାର ଜଣା-ଯାଇଛି ।

ପୁଣ୍ୟାତ୍ମା ପ୍ୟାରୀମୋହନ, ସ୍ୱର୍ଗୀୟ ଉତ୍କଳବନ୍ଧୁ ମଧୁସୂଦନ ଓ ପଣ୍ଡିତ ଗୋବିନ୍ଦ ରଥ ଉଭୟ ସହାଧ୍ୟାୟୀଙ୍କ ଉତ୍ତେଜନା ଓ ସାହାଯ୍ୟ କ୍ରମେ "ଉତ୍କଳ ପୁତ୍ର" ନାମକ ଏକ ସମ୍ବାଦପତ୍ର ପ୍ରକାଶ କରିଥିଲେ । ସେତେବେଳେ ପ୍ୟାରୀମୋହନ କଲେଜର ଦ୍ୱିବାର୍ଷିକ ଶ୍ରେଣୀ ବା ସେକେଣ୍ଡ ଇୟରରେ ଅଧ୍ୟୟନ କରୁଥାଆନ୍ତି ।

ଶାନ୍ତ ଶୀତଳ ଜଳଧି ବକ୍ଷରେ ମଧ୍ୟ ବଡ଼ବାଗ୍ନି ହୁତ୍ ହୁତ୍ ହୋଇ ଜଳି ଉଠେ । ଠିକ୍ ସେହିପରି ପ୍ୟାରୀମୋହନଙ୍କ ଶାନ୍ତ ଓ ଶୀତଳ ଜୀବନରେ ଅଗ୍ନିର ଉଦ୍‌ଗୀରଣ ହେଲା । ହୁଏତ ଆଶା କରିବାର କଥା ଯେ ସେ ମନଯୋଗ ପ୍ରଦାନପୂର୍ବକ ବିଦ୍ୟାଧ୍ୟୟନ କରି ଉଚ୍ଚ ଡିଗ୍ରୀ ଲାଭ କରିପାରିଥାନ୍ତେ । କିନ୍ତୁ ନିୟତିର ଉଦ୍ଦେଶ୍ୟ ଭିନ୍ନ ପ୍ରକାର । ଏଇଠି ଆସିଲା ପ୍ୟାରୀମୋହନଙ୍କ ଜୀବନରେ ଏକ ଐତିହାସିକ ବ୍ୟତିକ୍ରମ । ପ୍ରବଳ ପରାକ୍ରାନ୍ତ ବିଦେଶୀ ସରକାରଙ୍କ ବିରୁଦ୍ଧରେ ୧୮୭୨ ମସିହାରେ ବିଦ୍ରୂପାତ୍ମକ ପ୍ରବନ୍ଧ ତାଙ୍କର "ଉତ୍କଳ ପୁତ୍ର" ପତ୍ରିକାରେ ପ୍ରକାଶିତ କଲେ । ଫଳରେ ତାଙ୍କୁ କଲେଜରୁ ବହିଷ୍କୃତ ଆଦେଶ ମିଳିଥିଲା ।

"ପ୍ରିନ୍‌ସିପାଲ କହିଥିଲେ ଯେ ପ୍ୟାରୀମୋହନ ଯଦି ଆସି ମୋତେ କ୍ଷମାପ୍ରାର୍ଥନା କରନ୍ତି, ତେବେ ତାଙ୍କୁ ପୁଣି କଲେଜରେ ଅଧ୍ୟୟନ କରିବା ପାଇଁ ଆଦେଶ ଦେବି ।"

"ପଞ୍ଚମୁଣ୍ଡିଆ ନାହିଁ ବୀରର ଜାତକେ
ନ ମରେ କେବେ ପରାଣ ଆତଙ୍କେ ।"

ସତ୍ୟ ଉପରେ ପ୍ରତିଷ୍ଠିତ ଯାହାଙ୍କର ଜୀବନ, ଯେଉଁ ଯୁବକର ଅନ୍ତର ଆଲୋକରେ ତେଜସ୍ୱୀନ ହୋଇ କେବେ ନଇଁଯିବାର ବ୍ୟକ୍ତି ?

"ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ ।"

ପ୍ୟାରୀମୋହନ କହିଲେ, "ଯାହା କରିଛି ଠିକ୍ କରିଛି ।" ପ୍ରିନ୍‌ସିପାଲ ମୋତେ ବହିଷ୍କାର ଆଦେଶ ଦେଇଛନ୍ତି, ଇଚ୍ଛା ହେଲେ ସେ ମୋତେ ଡାକପାରନ୍ତି, ନଚେତ୍ ନାହିଁ । ଏ ପ୍ରକାର ଦୃଢ଼ ପଦକ୍ଷେପ ନେବା ହେତୁ ପୁନର୍ବାର ସେ ଆଉ ପ୍ରିନ୍‌ସିପାଲଙ୍କ ନିକଟକୁ ଯାଇ କ୍ଷମାପ୍ରାର୍ଥନା କଲେ ନାହିଁ କିମ୍ବା ପ୍ରିନ୍‌ସିପାଲ ଆଉ ଡାକଲେ ନାହିଁ । ସୁତରାଂ ପାଠପଢ଼ାରେ ତାଙ୍କର ଏହିଠାରୁ ଡୋର ବନ୍ଧା ହେଲା । କଲେଜରେ ଅଧ୍ୟୟନ କରୁଥିଲାବେଳେ ପ୍ୟାରୀମୋହନ ଓ ଉତ୍କଳକବି ମଧୁସୂଦନ ଉଭୟ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ।

## ବୈବାହିକ ଜୀବନ—

ପୁଣ୍ୟାତ୍ମା ପ୍ୟାରୀମୋହନ ତାଙ୍କର ଜୀବନକାଳ ମଧ୍ୟରେ ଦୁଇଥର ବିବାହ କରିଥିଲେ । ପ୍ରଥମ ପତ୍ନୀ ସ୍ୱର୍ଗାରୋହଣ ହେବା ଫଳରେ ସେ ଆଉଥରେ ବିବାହ କରିବାକୁ ରାଜି ନ ଥିଲେ । ମାତ୍ର ନିୟତିର ଗତି ଭିନ୍ନ ପ୍ରକାର । ସଂସାର ରକ୍ଷା ହେବା ଉଦ୍ଦେଶ୍ୟରେ ସେ ଦ୍ୱିତୀୟଥର ପାଇଁ ପୁଣି ବିବାହ କରିବାକୁ ବାଧ୍ୟ ହୋଇଥିଲେ । ବିଧାନନିର୍ଦ୍ଦେଶ ଭଳି ଦ୍ୱିତୀୟାପତ୍ନୀଙ୍କ ଗର୍ଭରୁ ତାଙ୍କର ଗୋଟିଏ ପୁତ୍ର ଲାଭ ହୋଇଥିଲା । ପ୍ରଥମା ପତ୍ନୀଙ୍କ ଗର୍ଭରୁ କୌଣସି ସନ୍ତାନ ସନ୍ତତି ହୋଇ ନ ଥିଲା । ଦ୍ୱିତୀୟା ପତ୍ନୀଙ୍କର ନାମ ହେମମୋହିନୀ ଦେବୀ । ପୁଣ୍ୟାତ୍ମା ପ୍ୟାରୀମୋହନଙ୍କ ପୁତ୍ରଟିର ନାମ

ଅତି ଆଦରର ସହିତ ଦେଇଥିଲେ ସଚ୍ଚିଦାନନ୍ଦ ମୋହନ ଆଶ୍ଚର୍ଯ୍ୟ । ସେ କଟକ ଅଦାଲତରେ (Civil Court) ପ୍ରଥମ ମୁନସଫଙ୍କର ପିରସ୍ତାଦାର ଥିଲେ । ନିରବଚ୍ଛିନ୍ନ ଭାବରେ ଦକ୍ଷତାର ସହିତ ଚାକିରି କରି ୧୯୦୮ ମସିହା ସେପ୍‌ଟେମ୍ବର ମାସରେ ସେ ଅବସର ଗ୍ରହଣ କରିଥିଲେ ।

ସଚ୍ଚିଦାନନ୍ଦ ମୋହନଙ୍କର ଅଧିକ ପିଲାଛୁଆ ନ ଥିଲେ । ତାଙ୍କର ଏକଇବଳା ବଶିକେଶନ ଭଳି ଗୋଟିଏ ମାତ୍ର ପୁଅ । ସେ ଯୋଗ୍ୟତାର ସହିତ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ଉଚ୍ଚଶିକ୍ଷା ପାଇବା ବାଟରେ ବହୁ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ସଚ୍ଚିଦାନନ୍ଦ ମୋହନ ଆଉ ତାଙ୍କୁ ଅଧିକ ପଢ଼ାଇବାକୁ କୌଣସି ଉପାୟ ପାଇଲେ ନାହିଁ । ବାଧ୍ୟ ହୋଇ ଶେଷରେ ତାଙ୍କର ପାଠପଢ଼ା ବନ୍ଦ କଲେ । ସେ ମାଟ୍ରିକ୍ୟୁଲେସନ୍ ପାସ କରିବା ପରେ ବାଧ୍ୟହୋଇ ଏ. ଆର. ପି. ବିଭାଗରେ ଯାଇ ଚାକିରୀ କଲେ ।

ପୁଣ୍ୟାତ୍ମା ପ୍ୟାରୀମୋହନଙ୍କର ଦ୍ୱିତୀୟା ପତ୍ନୀ ଅନେକ ବର୍ଷ ପର୍ଯ୍ୟନ୍ତ ବଞ୍ଚିରହିଥିଲେ । ବୃଦ୍ଧା ବୟସରେ ସେ ପେଟପିଡ଼ା ରୋଗରେ ପୀଡ଼ିତ ହେଲେ । କ୍ରମେ କ୍ରମେ ତାଙ୍କର ଶରୀର ଦୁର୍ବଳ ହୋଇ ପଡ଼ିଥିଲା । ୮୭ ବର୍ଷ ବଞ୍ଚିରହିବା ପରେ ସେ ଗଙ୍ଗାମଣ୍ଡଳରସ୍ଥ ନିଜର ବାସଭବନରେ ଦେହତ୍ୟାଗ କରିଥିଲେ ।

ତାଙ୍କର ଜଣେ କବି ଲେଖିଯାଇଛନ୍ତି—

"ଯେସନ୍ତ୍ୟାତ୍ମା ମେଘ୍ୟା ନ୍ଦ୍ୟା,
ଭବ ସାଗର ନୀ ମସନ୍ତ୍ୟାଜ୍ୟ ।"

**ଦେଶସେବା—**

କଲେଜ ଛାଡ଼ିବା ପରେ ପରେ ଆଦୌ ବିଚଳିତ ନ ହୋଇ ଦେଶ ସେବାରେ ନିଜର ଜୀବନକୁ ଉତ୍ସର୍ଗ କରିବା ପାଇଁ ସେ ପ୍ରତିଜ୍ଞା କରିଥିଲେ । ସେ ପ୍ରଥମେ ଗୋଟିଏ ସ୍କୁଲ ପ୍ରତିଷ୍ଠା କରିବା ପାଇଁ ବଦ୍ଧପରିକର ହୋଇଥିଲେ । ଏହି ସ୍କୁଲଟି ପ୍ରତିଷ୍ଠା କରିବା ଦିଗରେ ସେ ଅକ୍ଲାନ୍ତ ପରିଶ୍ରମ କରିଥିଲେ । ମନୁଷ୍ୟର ଉଚ୍ଚ ଆକାଙ୍‌କ୍ଷା ଅନେକ ସମୟରେ ପର୍ଯ୍ୟ୍ୟାୟରେ ଫଳପ୍ରଦ ହେବାର ଦେଖାଯାଏ ଏବଂ ବ୍ୟକ୍ତିବିଶେଷକୁ ଉଚ୍ଚ ଆସନ ଦେଇଥାଏ ।

ପୁଣ୍ୟାତ୍ମା ପ୍ୟାରିମୋହନଙ୍କର ଏହି ଯେଉଁ ସ୍କୁଲ ସ୍ଥାପନ କରିବା ଉଚ୍ଚ ଆକାଙ୍‌କ୍ଷା ଥିଲା, ଦିନେ ତାହା କାର୍ଯ୍ୟରେ ପରିଣତ ହେଲା । ଆଜିକାଲିର ଯେଉଁ ପ୍ୟାରିମୋହନ ଏକାଡେମୀ ନାମକ ଉଚ୍ଚ ଶିକ୍ଷାନୁଷ୍ଠାନ କଟକରେ ଅଛି ତାହା ସ୍ୱର୍ଗୀୟ ପ୍ୟାରିମୋହନଙ୍କର କୃତି । ଏହି ଶିକ୍ଷାନୁଷ୍ଠାନ ସମ୍ବନ୍ଧରେ ପରେ ବର୍ଣ୍ଣିତ ହୋଇଛି ।

୧୮୬୬ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା, ଲୋକେ ଖାଇବାକୁ ନ ପାଇ ପ୍ରାଣବିକଳରେ ନିଜ ନିଜର ଛୁଆପିଲାଙ୍କୁ ବିକି କରୁଥିଲେ ଓ କେତେକ ଲୋକ ଜୀବନ ବିକଳରେ ନିଜ ନିଜର ଛୁଆପିଲାଙ୍କର ମାଂସ ଖାଇ ଜୀବନ ବଞ୍ଚାଇ ଥିଲେ ସେହି କରୁଣ କାହାଣୀ ଶୁଣିଲେ ଲୋମ ଟାଙ୍କୁରି ଉଠେ; ଅଙ୍ଗପ୍ରତ୍ୟଙ୍ଗ ଅବଶ ହୋଇଯାଏ । ସେତେବେଳେ ଆଜିକାଲି ଭଳି ବଜାର ନ ଥିଲା । ସେ ସମୟରେ ଟଙ୍କାରେ ଗୁଡ଼ିଏ ଚାଉଳ ଗୌଣିଏ । ଅଭାବ ଏତେ ପଡ଼ିଲା ଯେ ଲୋକେ ଖାଇବାକୁ ନ ପାଇ ବହୁ ସଂଖ୍ୟାରେ ମଲେ । ସେତେବେଳେ ଆଜିକାଲି ଭଳି ରାସ୍ତାଘାଟ ନ ଥିବାରୁ ଦୂରସ୍ଥାନରୁ ଖାଦ୍ୟ ଜିନିଷ ଆଣିବାରେ ବିଶେଷ ଅସୁବିଧା ଘଟୁଥିଲା । ମାତ୍ର ଆଜିକାଲି ଯେତେ

ଅଭାବ ପଡ଼ୁ ପଛକେ ଗମନାଗମନର ବିଶେଷ ସୁବିଧା ଥିବା ହେତୁ ଦୂର ବିଦେଶରୁ ଖୁବ୍ କମ୍ ସମୟ ମଧ୍ୟରେ ଖାଦ୍ୟଜିନିଷ ଯାଇ ଆସି ପାରୁଛି । ତେଣୁ ଦୁର୍ଭିକ୍ଷ ପଡ଼ିବାର ସମ୍ଭାବନା ଆଜିକାଲି ଯଥେଷ୍ଟ କମ୍ ।

ଯେତେବେଳେ ଏହି କରାଳ ନଅଙ୍କ ଦୁର୍ଭିକ୍ଷ ଏ ଦେଶରେ ପଡ଼ିଥିଲା ସେତେବେଳେ ଏହି ପୁଣ୍ୟାତ୍ମା ପ୍ୟାରୀମୋହନଙ୍କର ବୟସ ମାତ୍ର ଚଉଦବର୍ଷ । ଏତେ କମ୍ ବର୍ଷର ପିଲାଠାରୁ କି ପ୍ରକାର ସାହାଯ୍ୟ ସହାନୁଭୂତି ମିଳିପାରେ ଏହା ପ୍ରାୟ ସମସ୍ତେ ହୃଦୟଙ୍ଗମ କରିପାରୁଥିବେ; କିନ୍ତୁ ପ୍ୟାରୀମୋହନ ଚଉଦବର୍ଷ ବୟସର ପିଲା ହେଲେ ମଧ୍ୟ ତାଙ୍କର ଅସୀମ ସାହସ ଓ କାର୍ଯ୍ୟଦକ୍ଷତା ସେ କାଳର ଲୋକଙ୍କୁ ଚମତ୍କୃତ କରିଥିଲା ।

ସେ ଦୁର୍ଭିକ୍ଷ ପ୍ରପୀଡ଼ିତ ଓ ଅନାହାରକ୍ଲିଷ୍ଟ ଲୋକମାନଙ୍କୁ ମୃତ୍ୟୁ-ମୁଖରୁ ଉଦ୍ଧାର କରିବା ପାଇଁ ସାହସର ସହିତ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ଦ୍ୱାର ଦ୍ୱାର ବୁଲି ସେମାନଙ୍କ ସାହାଯ୍ୟ ପାଇଁ ଭିକ୍ଷା ମାଗିଥିଲେ । ସ୍ୱେଚ୍ଛାସେବକ ହିସାବରେ ସେ ଦୁର୍ଭିକ୍ଷ ଅଞ୍ଚଳକୁ ଯାଇ ଖାଦ୍ୟ ସାମଗ୍ରୀ ଯୋଗାଇ ଲୋକମାନଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ । ଏହି ମହତ୍‌କାର୍ଯ୍ୟ ଯୋଗୁଁ ସେ ଓଡ଼ିଶାବାସୀଙ୍କର ଚିର ନମସ୍ୟ ହୋଇ ରହିବେ ।

ପୁଣ୍ୟାତ୍ମା ପ୍ୟାରୀମୋହନ ଜୀବନରେ ସ୍ୱେଚ୍ଛାସେବକ ହିସାବରେ କାର୍ଯ୍ୟ କରି ଲୋକମାନଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇବାର ଅନ୍ୟ ଏକ ଜ୍ୱଳନ୍ତ ଉଦାହରଣ ରହିଛି । ତାଙ୍କର ଶେଷ ଜୀବନର କିଛିଦିନ ପୂର୍ବରୁ ଏହି ଘଟଣାଟି ଘଟିଥିଲା । ସେତେବେଳେ ଆମଦେଶରେ ଆଜିକାଲି ଭଳି ଯାନବାହନର ଚଳପ୍ରଚଳ ବେଶି ନ ଥିଲା । ଲୋକେ ବୁଲି ବୁଲି ଶହ ଶହ କୋଶ ବାଟ ଯାଉଥିଲେ । ବର୍ଷେ ଏହି ଯାତ୍ରୀମାନଙ୍କୁ ପୁରୀ

ଯିବା ବାଟରେ ହଇଜା ଓ ଜ୍ୱର ଭୀଷଣ ଭାବେ ଆକ୍ରମଣ କଲା । ସେଥିରେ ବହୁତ ଲୋକ ପ୍ରାଣହରାଇଲେ । ସେତେବେଳର ଘଟଣା ଶୁଣିଲେ ଆମକୁ ଆଶ୍ଚର୍ଯ୍ୟ ଲାଗେ ।

ଆଜିକାଲି ଭଳି ସେତେବେଳେ ଯଦିଓ ଏତେ ପ୍ରକାର ରୋଗ ନ ଥିଲା ଔଷଧପତ୍ର ମଧ୍ୟ ଏତେ ସୃଷ୍ଟି ହୋଇ ନ ଥିଲା । ଔଷଧପତ୍ର ଦୁର୍ମୂଲ୍ୟ କଥା ଦୂରେ ଥାଉ ଦୁଷ୍ପ୍ରାପ୍ୟ ମଧ୍ୟ ଥିଲା ।

ଯାହାହେଉ ପୁଣ୍ୟାତ୍ମା ପ୍ୟାରୀମୋହନ ଯେତେବେଳେ ଖବର ପାଇଲେ ଯେ ପୁରୀକୁ ଯାଉଥିବା ଯାତ୍ରୀମାନେ ରୋଗରେ ପଡ଼ି ପ୍ରାଣ ହରାଉଛନ୍ତି, ସେ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । ସେ କାଳ ବିଳମ୍ବ ନ କରି ସାଙ୍ଗରେ ଔଷଧପତ୍ର ଓ କିଛି ପଥ୍ୟ ନେଇ ସେମାନଙ୍କର ଚିକିତ୍ସା ଲାଗି ବାହାରି ପଡ଼ିଲେ । ସେତେବେଳେ ପ୍ୟାରୀମୋହନ ଲୋକମାନଙ୍କୁ ବୁଝାଉଥିଲେ ଯେ "ତୁମ୍ଭେମାନେ ରୋଗକୁ ଘୃଣା କରିପାର ମାତ୍ର ରୋଗୀକୁ ଘୃଣା କରି ନାହିଁ ।" ପୁଣ୍ୟାତ୍ମା ପ୍ୟାରୀମୋହନ ଏହି ସେବାକାର୍ଯ୍ୟରେ ନିଯୁକ୍ତ ରହି ବିଶେଷ ଭାବେ କୃତକାର୍ଯ୍ୟ ହୋଇଥିଲେ ବୋଲି ଜନଶ୍ରୁତି ରହିଛି ।

ଏହା ବ୍ୟତୀତ ପ୍ୟାରୀମୋହନଙ୍କର ସଂକ୍ଷିପ୍ତ ଜୀବନକାଳ ମଧ୍ୟରେ ଦେଶରେ ଜନସାଧାରଣଙ୍କର ବିପଦ ଆପଦ ଏବଂ ସଂକ୍ରାମକ ରୋଗ ଆଦି ବ୍ୟାପିବା ସମୟରେ ସେମାନଙ୍କ ନିକଟରେ ପହଞ୍ଚିଯାଇ ସେମାନଙ୍କୁ ସାହସ ଦେବା ଓ ଚିକିତ୍ସା କରିବା ତାଙ୍କ ଜୀବନର ବ୍ରତ ଥିଲା ।

ହତାଶ ରୋଗୀ ପାଖରେ ଡାକ୍ତର ପହଞ୍ଚିଲେ ରୋଗୀ ଯେପରି ମନରେ ସାହସ ଓ ଶାନ୍ତି ବାନ୍ଧେ, ସେହିପରି ପ୍ୟାରୀମୋହନ ଯେଉଁଠି

ବିପଦ ଆପଦ ସମୟରେ ପହଞ୍ଚି ଯାଉଥିଲେ, ଲୋକଙ୍କ ମନରେ ସେହିପରି ସାହସ ଓ ଦମ୍ଭ ଜାଗ୍ରତ ହେଉଥିଲା ।

ଊନବିଂଶ ଶତାବ୍ଦୀର ପ୍ରାୟ ଅର୍ଦ୍ଧାଧିକ ଶେଷ ହେବା ପରେ ୧୮୬୯ ମସିହାରେ ଭାଷାବିଲୋପ ଆନ୍ଦୋଳନ ହେଲା । ଓଡ଼ିଶାରେ ତତ୍କାଳୀନ କେତେକ ସ୍ୱାର୍ଥପର ବଙ୍ଗୀୟ ବ୍ୟକ୍ତିମାନେ ବହୁତ ଚେଷ୍ଟା କରିଥିଲେ ଯେ ଓଡ଼ିଶାରୁ ଓଡ଼ିଆ ଭାଷାକୁ ଲୋପ କରି ସେମାନଙ୍କର ବଙ୍ଗଳାଭାଷା ପ୍ରଚଳନ କରିବେ । ବାଲେଶ୍ୱର ଜିଲ୍ଲା ସ୍କୁଲର ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ପ୍ରଚାର କରିଥିଲେ ।

ମାତ୍ର ପୁଣ୍ୟାତ୍ମା ପ୍ୟାରୀମୋହନ ଯେତେବେଳେ ଶୁଣିଲେ ଯେ କେତେକ ବଙ୍ଗବାସୀ ଓଡ଼ିଆ ଭାଷା ଓଡ଼ିଶାରୁ ବିଲୋପ କରିବା ଦିଗରେ ଯଥେଷ୍ଟ ଉଦ୍ୟମ ଚଳାଇଛନ୍ତି, ସେ ଆଉ ସ୍ଥିର ହୋଇ ରହି-ପାରିଲେ ନାହିଁ । ଓଡ଼ିଆ ଭାଷାର କିପରି ସୁରକ୍ଷା ହେବ ଏବଂ ଏହି ଭାଷା ଭବିଷ୍ୟତରେ କିପରି ପ୍ରସାରଲାଭ କରିବ ସେଥିପାଇଁ ପ୍ୟାରୀମୋହନ ବହୁତ ସ୍ଥାନବୁଲି ସଭାସମିତିମାନ କରି ଲୋକମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ଏହି ଓଡ଼ିଆ ଭାଷାର ସୁରକ୍ଷା ଓ ବିସ୍ତାର ନିମିତ୍ତ ପ୍ୟାରୀମୋହନ ଓ ତାଙ୍କ ସହିତ ପଣ୍ଡିତ ଗୋବିନ୍ଦ ରଥ ବଦ୍ଧପରିକର ହୋଇଥିଲେ । ପଣ୍ଡିତ ଗୋବିନ୍ଦ ରଥ ପ୍ୟାରୀମୋହନଙ୍କୁ ଏ ବିଷୟରେ ଯଥେଷ୍ଟ ଉତ୍ସାହ ଓ ପ୍ରେରଣା ଦେଇଥିଲେ ଏବଂ ସାହାଯ୍ୟ ମଧ୍ୟ କରିଥିଲେ । ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ଓ ଏ ଭାଷାକୁ ଦେଶ ବିଦେଶରେ ସମ୍ମାନିତ କରିବା ଦିଗରେ ବ୍ୟାସକବି ଫକୀରମୋହନ ୧୧-୫-୧୮୮୨

*

ମସିହାରେ "ବାଲେଶ୍ୱର ସମ୍ବାଦବାହିକା" ବୋଲି ଏକ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକା ବାହାରିବା ଫଳରେ ଓଡ଼ିଆ ଭାଷା ଦେଶ ବିଦେଶରେ ବିଶେଷ ସମାଦୃତ ହୋଇଥିଲା ।

ଏଥିପାଇଁ କେତେକ ସ୍ୱାର୍ଥାନ୍ଧ ବର୍ଗୀୟ ବ୍ୟକ୍ତି ଫକୀରମୋହନଙ୍କ ଉପରେ ଅତି ଈର୍ଷାପରାୟଣ ହୋଇ "ସାଲ ରଙ୍ଗ୍ଲାଉର" ବୋଲି କହିଥିଲେ । ଏଥିରେ ଫକୀରମୋହନ ଟଳେହେଲେ ବିଚଳିତ ନ ହୋଇ ନିଜର କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଥିଲେ ।

ଏହି ସମୟରେ ସମ୍ବଲପୁର ଜିଲାରେ ମଧ୍ୟ ଓଡ଼ିଆ ଭାଷାକୁ ଉଚ୍ଚ ଆସନ ଦେବା ଦିଗରେ ତୀବ୍ର ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏହି ଆନ୍ଦୋଳନ ସମୟରେ "ସମ୍ବଲପୁର ହିତୈଷିଣୀ" ବୋଲି ଏକ ଓଡ଼ିଆ ପତ୍ରିକା ସମ୍ବଲପୁରଠାରୁ ସେ ସମୟରେ ପ୍ରକାଶିତ ହୋଇଥିଲା ।

ଏହି ଓଡ଼ିଆ ଭାଷାର ସୁରକ୍ଷା ଦିଗରେ ଓଡ଼ିଶାର ଆଉ ଏକ ସ୍ୱନାମଧନ୍ୟ ବ୍ୟକ୍ତି ସ୍ୱର୍ଗୀୟ ଗୌରୀଶଙ୍କର ରାୟଙ୍କର ପ୍ରଗାଢ଼ ଚେଷ୍ଟା ଓ ଦାନ ଅତୁଳନୀୟ । ସେ ମହାନ୍‌ବ୍ୟକ୍ତି ଉତ୍କଳମାତାର ସୁଯୋଗ୍ୟ ସନ୍ତାନ ହିସାବରେ ଆଜି ସମସ୍ତଙ୍କ ନିକଟରେ ପୂଜ୍ୟ ଏବଂ ନମସ୍ୟ ହୋଇଅଛନ୍ତି । ସେ ତାଙ୍କର "ଉତ୍କଳ ଦୀପିକା" ପତ୍ରିକା ମାଧ୍ୟମରେ ମାତୃଭାଷା ଓଡ଼ିଆର ରକ୍ଷା ନିମିତ୍ତ ଜନଜାଗରଣ ସୃଷ୍ଟି କରିଥିଲେ ।

ପୁଣ୍ୟାତ୍ମା ପ୍ୟାରୀମୋହନଙ୍କ ଜୀବନରେ ପ୍ରଥମେ ଚାକିରୀ କରିବା ହୋଇଥିଲା ଗଡ଼ଜାତର ପୋଲିସ ବିଭାଗରେ । ସେ ସେଠାରେ କିରାଣୀ ଚାକିରୀରେ ପ୍ରଥମେ ନିଯୁକ୍ତ ହୋଇଥିଲେ । ମାତ୍ର ସେଠାରେ ବେଶିଦିନ ଚାକିରୀ କରି ନ ଥିଲେ । କୌଣସି ଏକ ବିଷୟରେ ପ୍ୟାରୀମୋହନଙ୍କର ଗୋଟିଏ ସାହେବଙ୍କ ସହିତ

ଝଗଡ଼ା ହେଲା । ସରକାରୀ ଚାକିରୀ ବିଶେଷତଃ ସାହେବଙ୍କ ଅଧୀନରେ ଚାକିରୀ କରିବେ ନାହିଁ ବୋଲି ସେହିଦିନଠାରୁ ସେ ପ୍ରତିଜ୍ଞାବଦ୍ଧ ହେଲେ । ସେତେବେଳର କିରାଣୀ ଚାକିରୀ କିଛି ଶ୍ରେଷ୍ଠ ଚାକିରୀ ନୁହେଁ । ଆଜିକାଲି କିରାଣୀ ଚାକିରୀରେ ଯେତିକି ମର୍ଯ୍ୟାଦା ରହିଛି ସେତେବେଳେ ଏହାଠୁଁ ଢେର ବେଶି ଥିଲା । ଆଉ ମଧ୍ୟ ତତ୍କାଳୀନ ଗୋରା ସାହେବଙ୍କ ଅଧୀନରେ ଚାକିରୀ କରିବା ବଡ଼ ମୁସ୍କିଲ ଥିଲା । ସେତେବେଳେ ସାହେବମାନଙ୍କୁ ସଲାମ ବଜାଇ, ଆଜ୍ଞା ହଜୁର କରି ତାଙ୍କ ପାଖରେ ନୌକରୀ କରିବାକୁ ପଡ଼ୁଥିଲା । ସେମାନଙ୍କୁ ଦେଖିବାମାତ୍ରେ ଅଧସ୍ତନ କର୍ମଚାରୀମାନେ ଭୟଭୀତ ହେଉଥିଲେ । ତାଙ୍କ ମୁହଁରେ ଜବାବ ଦେବା ବା ଯୁକ୍ତିତର୍କ ଇତ୍ୟାଦି କରିବା ତ ଦୂରର କଥା, ସେମାନଙ୍କ ସାମନାରେ ଚାଲିଲାବେଳେ ଲୋକେ ଥରହର ହେଉଥିଲେ ।

ମାତ୍ର ପ୍ୟାରୀମୋହନ ସ୍ୱାଧୀନ ଯୁବକ ଥିଲେ । ସେ କାହାରିକୁ ଭୟ କରିବାର ବ୍ୟକ୍ତି ନୁହନ୍ତି । ନବାବ ମୁହଁରେ ଜବାବ ଦେଲାବାଲା । ବେଳ ପଡ଼ିଲେ ସେ ଯେତେ ବଡ଼ ହାକିମ ହୁଅନ୍ତୁନା କାହିଁକି, ତାଙ୍କ ସହିତ ଯଥାଯଥ ଭାବରେ ଯୁକ୍ତି କରିବାକୁ ସେ ପଛେଇ ଯାଉ ନ ଥିଲେ ।

ଏଠାରେ ଟିକିଏ ସ୍ମରଣ କରାଇ ଦିଆଯାଇପାରେ ଯେ ଆଗକାଳର ଲୋକେ ମାଟ୍ରିକୁ୍ୟଲେସନ୍ ପାସ କରିବା ପରେ ଚାକିରୀ ଖଣ୍ଡିଏ କରିବା ପାଇଁ ଅତି ବ୍ୟସ୍ତ ହୋଇ ପଡ଼ୁଥିଲେ । ମାଟ୍ରିକ ଖଣ୍ଡିକ ପାସ୍ କରିବା ମାତ୍ରେ ସେତେବେଳେ ଜଣେ ଜ୍ଞାନୀଲୋକ ବୋଲି ବିବେଚିତ ହେଉଥିଲା । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏପରି ଚାକିରୀ ମନୋଭାବାପନ୍ନ କରିଦେଇଥିଲା ଯେ ମାଟ୍ରିକୁ୍ୟଲେସନ ପାସ କରିବା ପରେ ଆଉ ଅଧିକ ପାଠପଢ଼ିବା ପାଇଁ ଆମର ସ୍ପୃହା ଆଦୌ ହେଉ ନ ଥିଲା । ପାଠ ତ ସମସ୍ତେ ପଢ଼ିପାରନ୍ତି ନାହିଁ । କେତେକ ବ୍ୟବସାୟ ବାଣିଜ୍ୟ

କିଛି ପେଟ ପୋଷିବାର କଥା । କିନ୍ତୁ ଏହି ବ୍ରିଟିଶ ସରକାର ଅମଳରେ ଆମର ଏପରି ଦାସମନୋବୃତ୍ତି ହୋଇଯାଇଥିଲା ଯେ ଦି ଅକ୍ଷର ପାଠ ପଢ଼ିବା ମାନେ ଖାଲି ଚାକିରି କରିବା ମନୋବୃତ୍ତି ଲୋକଙ୍କଠାରେ ଦେଖାଯାଉଥିଲା । ଯାହା କୋଡ଼ିଏ ବର୍ଷର ସ୍ୱାଧୀନତା ପରେ ମଧ୍ୟ ଆଜି ସେହି ଦାସମନୋବୃତ୍ତି ଆମର ଯାଇନାହିଁ । ଆଜିର ମଧ୍ୟ ସେତେବେଳେ ଶିକ୍ଷିତ ଲୋକ ଅଧିକ ଜ୍ଞାନ ଅର୍ଜନ କରିବା ଦେଖାଯାଉଥିଲା ।

ଏଥିପାଇଁ ମଧ୍ୟ ଇଂରେଜମାନେ ଆମ୍ଭମାନଙ୍କ ପାଇଁ ଏ ସମସ୍ତ ଚାଲିଣି କରିଥିଲେ । ଆମର ଶିକ୍ଷାର ମାନଦଣ୍ଡ ରହିଥିଲା ସେମାନଙ୍କ ହାତରେ । ବିଲାତରେ ରହି ସେମାନେ ଆମ ପାଇଁ ଶିକ୍ଷାର ସମସ୍ତ ଖସଡ଼ା ପ୍ରସ୍ତୁତ କରୁଥିଲେ । କିଭଳି ଶିକ୍ଷାର ଖସଡ଼ା ପ୍ରସ୍ତୁତ କଲେ ଭାରତୀୟ-ମାନଙ୍କର ଚକ୍ଷୁ ଖୋଲିବ ନାହିଁ ଓ ତାଙ୍କର ଆସନ ଦୃଢ଼ୀଭୂତ ହେବ ଏ ସବୁର ପରିକଳ୍ପନା କରି ଭାରତୀୟମାନଙ୍କ ପାଇଁ ଯୋଜନା ପ୍ରସ୍ତୁତ କରୁଥିଲେ । ସତକୁ ସତ ଅନ୍ୟ କୌଣସି ବାଟରେ ପେଟ ପୋଷିବା ପାଇଁ ଆମ ଲୋକେ ମୁଣ୍ଡ ଖେଳାଉ ନ ଥିଲେ ।

ଏ ସମସ୍ତ ବିଷୟ ଯୁବକ ପ୍ୟାରୀମୋହନଙ୍କ ମନରେ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ସେଥିପାଇଁ ସେ ଯାହାକୁ ନ୍ୟାୟ ଓ ଉଚିତ ବୋଲି ମନେ କରୁଥିଲେ ତା ସପକ୍ଷରେ ଲଢ଼ୁଥିଲେ । ଯେତେବେଳେ ସାହେବଙ୍କ ସହିତ ତାଙ୍କର ଝଗଡ଼ା ହେଲା, ତାଙ୍କ ଅଧୀନରେ ଆଉ ଚାକିରି କରିବେ ନାହିଁ ବୋଲି କହି ସେଠାରୁ ବିଦାୟ ନେଇ ଆସିଲେ ।

ବ୍ରିଟିଶ ସରକାର ପ୍ୟାରୀମୋହନଙ୍କର ବୁଦ୍ଧି, ବିବେକ ଓ ବିଚକ୍ଷଣତା ଦେଖି ତାଙ୍କୁ ଡେପୁଟି ମାଜିଷ୍ଟ୍ରେଟ୍ ଚାକିରି ଯାଚିଥିଲେ ।

କିନ୍ତୁ ସେ କେବେହେଲେ ସରକାରୀ ଚାକିରୀ କରିବେ ନାହିଁ ବୋଲି ଆଗରୁ ପ୍ରତିଜ୍ଞା କରିଥିଲେ । ତେଣୁ ସେ ଚାକିରୀ କରିବାକୁ ରାଜି ହେଲେ ନାହିଁ । ସରକାରଙ୍କୁ ସିଧାସଳଖ ମନା କରିଦେଲେ ।

ପୁନରାୟ କିଛିଦିନ ପରେ ସରକାର ପ୍ୟାରୀମୋହନଙ୍କର ବୁଦ୍ଧି ବୃତ୍ତିରେ ଖୁସି ହୋଇ ଷ୍ଟାଟୁଟାରୀ ସିଭିଲିୟାନ୍ ହେବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ମାତ୍ର ଯେଉଁ ପ୍ୟାରୀମୋହନ ସରକାରୀ କଲେଜରୁ ବହିଷ୍କୃତ ହୋଇଥିଲେ, ସେ ସରକାର ଅଧୀନରେ ଜୀବନ ଗଲେ ସୁଦ୍ଧା ଚାକିରୀ ଆଦୌ କରିବେ ନାହିଁ ବୋଲି ଯେଉଁ ପ୍ରତିଜ୍ଞା ପୂର୍ବରୁ କରିଥିଲେ, ତାହା ସ୍ମରଣ ହେବାମାତ୍ରେ ପୁଣି ସେ ଚାକିରୀ କରିବେ ନାହିଁ ବୋଲି ସରକାରଙ୍କୁ ମନା କରିଦେଲେ ।

ସରକାରଙ୍କର ଏହି ସବୁ ଲଂଘର ଉତ୍ତର ଦେବାକୁ ଯାଇ ପ୍ୟାରୀମୋହନ କହିଥିଲେ; "ଯେଉଁ ସରକାର ମୋତେ ଚୋରି ବନାଇଲା ସେ ସରକାର ଅଧୀନରେ ଚାକିରୀ କରିବି ନାହିଁ, ଏହା ନିଶ୍ଚିତ । ମାତ୍ର ଏ ସରକାରଙ୍କୁ କିପରି ଏ ଦେଶରୁ ତଡ଼ିବାକୁ ହେବ ତାହା ଆମ୍ଭମାନଙ୍କର ବିଚାର ବିଷୟ ହୋଇପଡ଼ିଛି । ମୋତେ ମାଜିଷ୍ଟ୍ରେଟ୍ ଚାକିରୀ ଛାଡ଼ ଯଦି ବଡ଼ଲାଟ (Viceroy) ଚାକିରୀ ଦିଅନ୍ତି ତେବେ ମଧ୍ୟ ପ୍ୟାରୀମୋହନ ଭୁଲିଯିବା ବ୍ୟକ୍ତି ନୁହେଁ ।" ଏଭଳି ଅକାଟ୍ୟ ଯୁକ୍ତି ତତ୍‌କାଳୀନ ପରାଧୀନ ରାଷ୍ଟ୍ରର ଜଣେ ଯୁବକ ପକ୍ଷରେ କିଛି କମ୍ ଗୌରବ ବିଷୟ ନୁହେଁ । ସେତେବେଳେ, କେତେ ଲୋକଙ୍କ ମନରେ ଏପରି ଭାବନା ଦେଖାଯାଉଥିଲା ?

ପ୍ୟାରୀମୋହନ ତାଙ୍କ ଜୀବନକାଳ ମଧ୍ୟରେ କେତେକ ଗଡ଼ଜାତ ରାଜାଙ୍କ ଅଧୀନରେ କାର୍ଯ୍ୟ କରିଥିଲେ । ଡମପଡ଼ା ରାଜାଙ୍କ ବନ୍ଦୋବସ୍ତ କାର୍ଯ୍ୟରେ ପ୍ୟାରୀମୋହନ ତାଙ୍କୁ ଅତି ସାହାଯ୍ୟ କରିଥିଲେ ।

ସ୍ୱର୍ଗୀୟ ଭୁବନାନନ୍ଦ ଦାସ ବି. ଇ. ବି. ସି. ଇ.ଙ୍କ ବଡ଼ ଭାଇ ସ୍ୱର୍ଗୀୟ ରାଘବାନନ୍ଦ ଦାସଙ୍କ କହିବାମତେ ଡମପଡ଼ା ରାଜାଙ୍କର କିଛି ସମ୍ପତ୍ତି ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଚିକାକୋଲଠାରେ ଥିଲା । ଏହି ସମ୍ପତ୍ତିବାଡ଼ି ନେଇ ବହୁତ ମାଲିମୋକଦ୍ଦମା ଓ ଗଣ୍ଡଗୋଳ ଉପୁଜିଲା । ସେତେବେଳେ ସ୍ୱର୍ଗୀୟ ରାଘବାନନ୍ଦ ଦାସ ଡମପଡ଼ା ରାଜାଙ୍କର ମ୍ୟାନେଜର ଥିଲେ । ଏହି ସମ୍ପତ୍ତିବାଡ଼ିର ଗଣ୍ଡଗୋଳ ନେଇ ଡମପଡ଼ା ରାଜା ପ୍ୟାରୀମୋହନଙ୍କ ଉପରେ ମୋକଦ୍ଦମାର ଦାୟିତ୍ୱ ଅର୍ପଣ କରିଥିଲେ ।

ରାଜାଙ୍କର ସମ୍ପତ୍ତି ପ୍ୟାରୀମୋହନ ଫେରାଇ ଆଣିବା ପାଇଁ ମାନ୍ଦ୍ରାଜ ନିଜେ ଯାଇଥିଲେ । ସେଠାରେ ମୋକଦ୍ଦମାରେ ଲଢ଼ି ଶେଷରେ ମୋକଦ୍ଦମାକୁ ଡିଗ୍ରୀ କରି ଆଣିଥିଲେ । ରାଜା ଏଥିରେ ପ୍ୟାରୀମୋହନଙ୍କ ଉପରେ ଅତି ଖୁସି ହୋଇ ତାଙ୍କୁ ପଗଡ଼ି, ଗାଉନ, ଘଡ଼ି ଇତ୍ୟାଦି କେତୋଟି ଜିନିଷ ପୁରସ୍କାର ଦେଇଥିଲେ । ମାତ୍ର ପ୍ୟାରୀମୋହନ ସେ ଜିନିଷଗୁଡ଼ିକ ବେଶିଦିନ ବ୍ୟବହାର କରିପାରି ନ ଥିଲେ । ପ୍ୟାରୀମୋହନ ଜୀବିତ ଥିବା ପର୍ଯ୍ୟନ୍ତ ଡମପଡ଼ା ରାଜା ତାଙ୍କୁ ମାସିକ ଦୁଇ ଶହ ପଚିଶ ଟଙ୍କା ଭତ୍ତା ଦେବାର ବ୍ୟବସ୍ଥା କରିଥିଲେ ।

ପ୍ୟାରୀମୋହନଙ୍କ ପୁତ୍ର ଜ୍ଞାନମୋହନ ଆଚାର୍ଯ୍ୟ ଶେଷକୁ ଅଭାବରେ ପଡ଼ି ପଗଡ଼ିକୁ ମାତ୍ର ପଞ୍ଚାଅଶୀଟି ଟଙ୍କାକୁ ପୂରଣ ମାରୱାଡ଼ିଙ୍କୁ ବିକ୍ରୀ କରି ଦେଇଥିଲେ । ପୂରଣ ମାରୱାଡ଼ି ପୁଣି କିଛିଦିନ ପରେ ତାହା ଦଶପଲ୍ଲାର ରାଜାଙ୍କୁ ବିକ୍ରୀ କରି ଦେଇଥିଲେ । ତଥାପି ଅଭାବ ଅସୁବିଧାରେ ପଡ଼ି ମଧ୍ୟ ଘଡ଼ିଟିକୁ କାହାକୁ ବିକି ନ କରି ନିଜେ ବ୍ୟବହାର କରୁଥିଲେ ।

ଆଜକାଲ ଯୁଗରେ ଯେତେ ଅଭାବ ଅସୁବିଧା ପଡ଼ିଲେ ମଧ୍ୟ ଲୋକ ମଉଜ ମଜଲିସ୍‌ରେ ଚଳିବା ବନ୍ଦ ରହୁନାହିଁ । ତିନି ଟଙ୍କା ରୋଜଗାର କଲେ ମଧ୍ୟ ପାଞ୍ଚଟଙ୍କା ଖରଚ କରିବାର ବାଟ ଲୋକେ କାଢ଼ୁଛନ୍ତି । ତା ଛଡ଼ା ସୁଖାଦ୍ୟ ବଦଳରେ କୁଖାଦ୍ୟ ଖାଇବା ତ ଆଜକାଲ ଅଭ୍ୟାସରେ ପଡ଼ିଗଲାଣି । ଯେଉଁ ଜିନିଷ ଖାଇଲେ ଦେହରେ ଶକ୍ତି ଓ ବୁଦ୍ଧି ସାଧନ ହୁଏ, ଯଥା—ଦୁଧ, ଦହି, ଘିଅ ଇତ୍ୟାଦି । ସେ ଖାଦ୍ୟ ସବୁକୁ ତ ଆଜକାଲ ଅପମିଶ୍ରଣ କରି ତାହାକୁ ବିଷତୁଲ୍ୟ କଲେଣି ।

ଆଗେ ଆମ ଦେଶରେ ପ୍ରଚୁର ପରିମାଣରେ ଉତ୍ତମ ଖାଦ୍ୟ ମିଳୁଥିଲା ଯାହାକି ଆଜକାଲି ଦେଖିବାକୁ ସ୍ୱପ୍ନ । ଖାଇବା କଥା ଦୂରେ ଥାଉ, ତାହା ଦୁର୍ମୂଲ୍ୟ ହେବା ସଙ୍ଗେ ସଙ୍ଗେ ଦୁଷ୍ପ୍ରାପ୍ୟ ମଧ୍ୟ ହୋଇଛି । ସେତେବେଳେ ଦେଶରେ ଆଜକାଲି ଭଳି ଜିନିଷ-ପତ୍ରର ଦରଦାମ ସବୁ ବଢ଼ି ନଥିଲା । ଲୋକେ ସେ ସମୟରେ ଖାଇବା ପିଇବା ଓ ପିନ୍ଧିବାକୁ ପ୍ରଚୁର ପାଉଥିଲେ । ସେତେବେଳେ ମଧ୍ୟ ଆମର ପୁଣ୍ୟାତ୍ମା ପ୍ୟାରୀମୋହନ ଅତି ଆଡ଼ମ୍ବର ସହିତ ଚଳିବାକୁ କୁଣ୍ଠାବୋଧ କରୁଥିଲେ । ସାଧାରଣ ଲୁଗା ଜାମା ଖଣ୍ଡିଏ ପିନ୍ଧିଲେ ସେ ଅତି ଆନନ୍ଦ ଉପଲବ୍ଧି କରୁଥିଲେ । ସେ ଭାବୁଥିଲେ "ଏହି ମୋ ପକ୍ଷେ ଯଥେଷ୍ଟ ହେଲାଣି । ଅଧିକ ଦାମର ପୋଷାକ ପିନ୍ଧିବାକୁ ମୋର ଯୋଗ୍ୟତା ନାହିଁ ।" ଏଭଳି ଭାଷା ସାଧାରଣ ଲୋକଙ୍କ ମୁହଁରୁ ବାହାରିବା କ୍ୱଚିତ ଦେଖାଯାଏ । ସେ ଯେ ଅତି ସାଧାରଣ ଲୋକ ହିସାବରେ ଜୀବନଯାପନ କରୁଥିଲେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଏ ଗଲା ସିନା ପୋଷାକ ପରିପାଟୀ କଥା, କିନ୍ତୁ ଖାଦ୍ୟପେୟ ମଧ୍ୟ ତାଙ୍କ ପକ୍ଷେ ତଦ୍ରୂପ ଥିଲା । ଅତି ଆଡ଼ମ୍ବର ସହିତ ଖାଇବା

ପିଇବାର ମଧ୍ୟ ସେ ବିରୋଧୀ ଥିଲେ । ସେ କହୁଥିଲେ, "ଆମେ ଏତେ ଭଲ ଜିନିଷ ଖାଇଲେ ଆସିବ କେଉଁଠୁ ? ଦେବ କିଏ ? ଅନ୍ୟମାନେ ଆମ ଭଳି ଜିନିଷ ଖାଇବାକୁ ପାଉଛନ୍ତି କି ? ସୁତରାଂ ଆମେ କେବଳ ଭଲ ଖାଇ ଭଲ ପିନ୍ଧିଲେ ଦୁନିଆ ଯେ ଭଲରେ ରହିବ ଏ କଥା ନୁହେଁ । ସାଧାରଣ ଭାବରେ ଦୁଇଟା ଖାଇଲେ ଚଳିଯିବ । ଏପରିକି ଶରୀରକୁ ସବଳ କରିବା ପାଇଁ ଆମର ଯେତିକି ଖାଦ୍ୟ ଖାଇବା ଆବଶ୍ୟକ ଆମେ ସେତିକି ଖାଇବା ନିତାନ୍ତ ଉଚିତ । ଶରୀର ପ୍ରତି ନଜର ରଖି ଆମର ଖାଦ୍ୟପେୟ ଓ ପରିଧେୟ ବସ୍ତୁ ତାହା ଉପଯୋଗୀ ହେବା ଉଚିତ ।"

ସୁତରାଂ ପ୍ୟାରୀମୋହନ ମୋଟା ବଗଡ଼ା ଭାତ ବିଶେଷତଃ ଡିଙ୍କି କୁଟା ନାଲି ଚାଉଳର ଭାତ ଦୁଇଟା, ସାଧାରଣ ତରକାରୀ କିଛିଏ ଓ ତାହା ସାଙ୍ଗକୁ ଦୁଧ ଟୋପାଏ ପିଇବାକୁ ଅତି ଭଲ ପାଉଥିଲେ । ସେ ବାଲିମୁଣ୍ଡି ସରୁଚାଉଳ ଖାଇବାକୁ ଘୋର ବିରୋଧୀ ଥିଲେ । ସେ ନିଜେ ଯେପରି ଚଳୁଥିଲେ ସାଧାରଣ ଲୋକମାନଙ୍କୁ ସେହିପରି ଚଳିବାକୁ ପରାମର୍ଶ ଦେଉଥିଲେ । କାହାର ଅଭାବ ଅସୁବିଧା ପଡ଼ିଲେ ତାହା ପୂରଣ କରିବାପାଇଁ ସେ ସ୍ଥାନରେ ଯାଇ ହାଜର ହୋଇ ଯାଉଥିଲେ ।

"ଥିଲେ ଥାଉ ପଛେ ଗୁଣ ହଜାର,
ଚରିତ୍ର ବିହୁନେ ସବୁ ଅସାର ।"

ଯଥାର୍ଥରେ "ଚରିତ୍ର" ବ୍ୟକ୍ତିର ଶ୍ରେଷ୍ଠ ଅଳଙ୍କାର । ପିଲା ଅବସ୍ଥାରୁ ମଧ୍ୟ ପୁଣ୍ୟାତ୍ମା ପ୍ୟାରୀମୋହନ ଖୁବ୍ ସଚ୍ଚରିତ୍ର ଥିଲେ । ତାଙ୍କର ବହୁତ ସଂଯମ ଶକ୍ତି ମଧ୍ୟ ଥିଲା । ଯାହାକି ସାଧାରଣ

ମସିହା ଡିସେମ୍ବର ମାସ ୩ ତାରିଖରେ ଏହି ବିଦ୍ୟାଳୟ "ପ୍ୟାରୀମୋହନ ଏକାଡ଼େମୀ" (Pearymohan Academy) ନାମକରଣ କରାଗଲା । ସେହି ବର୍ଷ ଫେବୃୟାରୀ ମାସ ୧୨ ତାରିଖରେ ସ୍କୁଲର ପରିଚାଳନା ପାଇଁ ଗୋଟିଏ ପରିଚାଳନା ସମିତି ( Managing Committee ) ଗଠନ କରାଗଲା ।

ପୁଣ୍ୟାତ୍ମା ପ୍ୟାରୀମୋହନ ଯେତେବେଳେ ସ୍କୁଲଗଠନ କରିବା ପାଇଁ ଆପ୍ରାଣ ଉଦ୍ୟମ ଚଳାଇଲେ, ତାଙ୍କର ଏକମାତ୍ର ସହଯୋଗୀ ବନ୍ଧୁ ପଣ୍ଡିତ ଗୋବିନ୍ଦ ରଥ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ଭିକ୍ଷା ଦେବାକୁ ସମସ୍ତେ ପ୍ରସ୍ତୁତ ଥାଆନ୍ତି, ମାତ୍ର ଜନସାଧାରଣଙ୍କ ସେବାରେ କେତେଜଣ ଲୋକ କାନ୍ଧରେ ଭିକ୍ଷା ଝୁଲି ପକାଇ ପାରନ୍ତି ? ସ୍ୱର୍ଗୀୟ ପ୍ୟାରୀମୋହନ ଜନସାଧାରଣଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ନିଜର ସଂସାରର ଖିଦିମତିଗୁଡ଼ିକୁ ପଛକୁ ପକାଇ ଦେଇ ସାଧାରଣଙ୍କ ସେବାକାର୍ଯ୍ୟରେ ସମୟକୁ ବିତେଇ ଦେଇଥିଲେ ।

ଏହି ପବିତ୍ର ଶିକ୍ଷାନୁଷ୍ଠାନ ପାଇଁ ପ୍ରଥମେ ଉପଯୁକ୍ତ ପ୍ରଧାନ ଶିକ୍ଷକ ଜଣେ ପାଇବାପାଇଁ ପ୍ୟାରୀମୋହନ କଲିକତା ପର୍ଯ୍ୟନ୍ତ ଯାଇ ସ୍ୱର୍ଗୀୟ ବିପିନଚନ୍ଦ୍ର ପାଲଙ୍କୁ କିଛିକ ନେଇ ଆସିଥିଲେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ପ୍ୟାରୀମୋହନ କର୍ମନିଷ୍ଠା, ଧୈର୍ଯ୍ୟ ଓ ସାହସ କେତେଦୂର ବଳବତ୍ତର ।

କେବଳ ଏତିକି ନୁହେଁ, ପ୍ୟାରୀମୋହନ ଏକାଡେମୀର ସମସ୍ତ ଖର୍ଚ୍ଚ ନିଜ ହାତରୁ ଦେଇ ଅନୁଷ୍ଠାନଟିକୁ ଚଳାଇଥିଲେ । ରାତି ଅଧରେ ଯାଇ ଲୋକଙ୍କ ଘରେ ପହଞ୍ଚି ସ୍କୁଲଟି ପାଇଁ ହାତପତାଇ ଭିକ୍ଷା ମାଗୁଥିଲେ ।

ସେ ଯେ ଏକପକ୍ଷରେ ରଜା ହରିଶ୍ଚନ୍ଦ୍ରଙ୍କ ପରି ଦାନୀ ଓ ଅନ୍ୟ ପକ୍ଷରେ ବିଶ୍ୱାମିତ୍ର ଋଷିଙ୍କ ପରି ଶ୍ରେଷ୍ଠ ଯାଚକ ଥିଲେ ଏହା ପ୍ରକାଶ କରିବା ବାହୁଲ୍ୟ ମାତ୍ର ।

ପୁଣ୍ୟାତ୍ମା ପ୍ୟାରିମୋହନ ଜନସାଧାରଣଙ୍କ ସେବା କାର୍ଯ୍ୟରେ ଆର୍ଥିକ ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ଶାରୀରିକ ସାହାଯ୍ୟ ମଧ୍ୟ ଦେଇଥିଲେ ।

ସ୍ୱର୍ଗୀୟ ବିପିନଚନ୍ଦ୍ର ପାଲ, ଯେ କି ପ୍ୟାରୀମୋହନ ଏକାଡେମୀର ପ୍ରଥମ ପ୍ରଧାନ ଶିକ୍ଷକ, ତାଙ୍କ ବିଷୟରେ ସଂକ୍ଷେପରେ ଏଠାରେ କହିବା ବୋଧହୁଏ ଅସମୀଚୀନ ହେବ ନାହିଁ ।

ବିପିନଚନ୍ଦ୍ର ପାଲ ଜଣେ ସାମାନ୍ୟ ଲୋକ ନ ଥିଲେ । ଭାରତ ବିଖ୍ୟାତ ସ୍ୱର୍ଗୀୟ ଲୋକମାନ୍ୟ ବାଳଗଙ୍ଗାଧର ତିଳକ, ଲାଲ ଲଜପତ୍ ରାୟ ହେଉଛନ୍ତି ବିପିନବାବୁଙ୍କର ଅନ୍ତରଙ୍ଗ ବନ୍ଧୁ । ସେଥିପାଇଁ ଭାରତର ଯେ କୌଣସି ଲୋକ ଏହାଙ୍କ ମଧ୍ୟରୁ ଜଣକର କଥା ପଡ଼ିଲେ ତିନିଜଣଙ୍କ କଥା କହି ବସନ୍ତି । ତାହାର କାରଣ ହେଉଚି ଏହି ତିନିଜଣ ବ୍ୟକ୍ତି ଭାରତର ଅତି ଖ୍ୟାତନାମା ଲୋକ । ଏହି ତିନିଜଣଙ୍କର ଅବଦାନ ଦେଶ ପକ୍ଷେ କିଛି କମ୍ ନୁହେଁ । ଲୋକମାନ୍ୟ ତିଳକ, ଲାଲ ଲଜପତ୍ ରାୟ ଓ ବିପିନଚନ୍ଦ୍ର ପାଲ ଏହି ତିନିଜଣ ଭାରତର ସ୍ୱାଧୀନତା ପାଇଁ ନିଜ ନିଜର ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଏମାନେ ଅହିଂସା ସଂଗ୍ରାମର ପ୍ରଥମ ରଥୀ ଅଟନ୍ତି । ଏହିମାନଙ୍କ ଯୋଗୁ ହିଁ ଆଜି ଆମ ଦେଶ ସ୍ୱାଧୀନତା ପାଇଛି ।

ମହାତ୍ମାଗାନ୍ଧୀ ସିନା ଆମ ଦେଶକୁ ସ୍ୱାଧୀନତା ଆଣିଲେ, ମାତ୍ର ଲୋକମାନ୍ୟ ତିଳକ ହେଉଛନ୍ତି ଏହାର ପଥପ୍ରଦର୍ଶକ । ସେ ସ୍ୱର୍ଗୀୟ

ମହାତ୍ମାଗାନ୍ଧୀଙ୍କୁ ନିଜ ପାଖରେ ରଖି ଦେଶରେ ସ୍ୱାଧୀନତା ବିଷୟରେ ତାଲିମ କରିଥିଲେ । ଲୋକମାନ୍ୟ ତିଳକଙ୍କ ପରାମର୍ଶ ଓ ବାକ୍ୟକୁ ସେ ଶିରୋଧାର୍ଯ୍ୟ କରି ଶେଷରେ ସରକାର ସହିତ ଅହିଂସା ଆନ୍ଦୋଳନ କରି ଆମ ଦେଶକୁ ସ୍ୱାଧୀନତା ଆଣିଥିଲେ ।

ଲାଲା ଲଜପତ୍ ରାୟ, ବାଳଗଙ୍ଗାଧର ତିଳକ ଓ ବିପିନଚନ୍ଦ୍ର ପାଲ ଏହି ତିନିଜଣ ବ୍ୟକ୍ତିଙ୍କୁ ଲୋକେ, "ଲାଲ, ବାଲ ଓ ପାଲ" ବୋଲି କହନ୍ତି ।

ଉପରୋକ୍ତ ବ୍ୟକ୍ତି ସେହି ବିପିନଚନ୍ଦ୍ର ପାଲ । ସେ ପ୍ରଥମ ହେଡ଼ମାଷ୍ଟର କାର୍ଯ୍ୟ ପ୍ୟାରୀମୋହନଙ୍କ ସ୍କୁଲରେ ଆରମ୍ଭ କରିଥିଲେ । ଏହା କମ୍ ଗୌରବର ବିଷୟ ନୁହେଁ ।

"ଗୁଣକୁ ଗୁଣି ଚହ୍ନେ" ଭଳି ଆଚାର୍ଯ୍ୟ ପ୍ୟାରୀମୋହନ ଯେତେବେଳେ ବଙ୍ଗଳାରେ ପହଞ୍ଚି ସ୍ୱର୍ଗୀୟ ବିପିନବାବୁଙ୍କୁ ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଇବା ପାଇଁ ଅନୁରୋଧ କଲେ, ସେତେବେଳେ ସେ ଏତିକି ମାତ୍ର ଚିନ୍ତା କରିଥିଲେ ଯେ; ଯେଉଁ ଯୁବକର ଏତେ ଉତ୍ସାହ ରହିଛି ଏବଂ ସେଥିପାଇଁ ସୁଦୂର ଓଡ଼ିଶାରୁ ଆସି ବଙ୍ଗଳାରେ ପହଞ୍ଚିଲାଣି ଗୋଟିଏ ଅନୁଷ୍ଠାନ ପାଇଁ, ତେବେ ମୁଁ ନ ଯିବି କାହିଁକି ?

ବିପିନବାବୁ ତତ୍‌କ୍ଷଣାତ୍ କୌଣସି ଦ୍ୱିଧା ପ୍ରକାଶ ନ କରି ବାହାରିଲେ ପ୍ୟାରୀମୋହନଙ୍କ ସଙ୍ଗରେ ଗୃହତ୍ୟାଗ କରିବା ପାଇଁ । ସେ କଟକରେ ପ୍ରଧାନ ଶିକ୍ଷକତା କାର୍ଯ୍ୟ କରି ଏକାଡେମୀର ସୁନାମ ବହୁଗୁଣ ବଢ଼ାଇ ଦେଇ ଯାଇଛନ୍ତି । ତାଙ୍କର କାର୍ଯ୍ୟକଳାପକୁ ବିଦ୍ୟାଳୟର ପରବର୍ତ୍ତୀ ଛାତ୍ର ତଥା ଶିକ୍ଷକମାନେ ଅନୁକରଣ କରି

ଏ ପର୍ଯ୍ୟନ୍ତ ଅନୁଷ୍ଠାନର ଗୌରବ ରଖିବା ସଙ୍ଗେ ସଙ୍ଗେ ଐତିହ୍ୟ ବଜାଏ ରଖି ଆସୁଛନ୍ତି ।

ପ୍ୟାରୀମୋହନ ଯେ କେବଳ ସ୍କୁଲଟିଏ ଗଢ଼ିଥିଲେ ଏ କଥା ନୁହେଁ, ଅବସର ଟିକିଏ ପାଇଲେ ଅଧିକାଂଶ ସମୟରେ ସ୍କୁଲକୁ ଆସି ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ତାଙ୍କ ଜୀବନରେ ଆଉରି ଅନ୍ୟ ଏକ ତାତ୍ପର୍ଯ୍ୟ ବିଷୟ ଆମେ ଜାଣିବାକୁ ପାଇଛେ । ସେ ଛାତ୍ରମାନଙ୍କୁ ଇତିହାସ ପଢ଼ାଉଥିଲେ । ଓଡ଼ିଶା ଇତିହାସଟି ତାଙ୍କୁ କିଛି ପଢାଇବାକୁ ହେଲେ ସେ ସମଗ୍ର ଓଡ଼ିଶା ଭ୍ରମଣରେ ଯାଇ ଅତି ପ୍ରାଚୀନ ବୃଦ୍ଧମାନଙ୍କଠୁ ଐତିହାସିକ ଘଟଣା ମାନ ସଂଗ୍ରହ କରି ଆଣୁଥିଲେ ।

ଏଭଳି ଅସାଧାରଣ ଉଦ୍ୟମ ଓ ଉତ୍ସାହ ତାଙ୍କୁ ଆଜି ଶିକ୍ଷାକ୍ଷେତ୍ରରେ ଅମର କରି ରଖିଛି । କେବଳ ଏତିକି ନୁହେଁ, ସେ ମଧ୍ୟ 'ଓଡ଼ିଶା ଇତିହାସ' ନାମକ ଏକ ଉପାଦେୟ ପୁସ୍ତକ ପ୍ରଣୟନ କରିଥିଲେ ଏବଂ ତାହା ୧୮୭୨ ମସିହାରେ ମୁଦ୍ରିତ ହୋଇ ଛାତ୍ରମାନଙ୍କର ଅଶେଷ କଲ୍ୟାଣ ସାଧନ କରିଥିଲା ।

ଜମିଦାର ସ୍ୱର୍ଗୀୟ ଗୋଲକଚନ୍ଦ୍ର ଘୋଷ ଯେ କି ଅତି ପରୋପକାରୀ ବ୍ୟକ୍ତି, ସେ ପ୍ୟାରୀମୋହନଙ୍କ ଆଚରଣ ବ୍ୟବହାର ଓ କାର୍ଯ୍ୟଦକ୍ଷତାରେ ଅତି ସନ୍ତୁଷ୍ଟ ହୋଇଥିଲେ । ସେ ପ୍ୟାରୀମୋହନଙ୍କୁ ନିଜ ଇଷ୍ଟେଟ୍‌ରେ ପାଞ୍ଚଶହ ଟଙ୍କା ବେତନରେ ମ୍ୟାନେଜର କରିବାକୁ ବହୁବାର ଅନୁରୋଧ କରିଥିଲେ । ମାତ୍ର ସେ ପାଞ୍ଚଶତ ଟଙ୍କା ଉପରେ ଲୋଭ ନ କରି ତାଙ୍କୁ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଥିଲେ, ମୋତେ ଟଙ୍କା କେବେହେଲେ ବଶୀଭୂତ କରିବାରବ ନାହିଁ । ମୁଁ ସତକଥା କହି ଆପଣଙ୍କର ଅପ୍ରିୟ ହୋଇପାରେ, ମାତ୍ର ମୁଁ କେବେହେଲେ ଆପଣଙ୍କୁ ଭୁଲବାଟରେ ଚଳାଇବି ନାହିଁ । ସେ କହିଥିଲେ, "ମୁଁ କାହିଁକି ମ୍ୟାନେଜର ହେବ । ଆପଣ ଯଦି

ମୋତେ ମାସକୁ ହଜାରେ ଟଙ୍କା ଦରମା ଦିଅନ୍ତୁ, ତଥାପି ମଧ୍ୟ ମୁଁ ସେ ସମ୍ପତ୍ତିକୁ ରକ୍ଷା କରିପାରୁ ନାହିଁ । ଆପଣ ଦୟାକରି ଅନ୍ୟ ବ୍ୟବସ୍ଥା ଦେଖନ୍ତୁ ।"

୧୮୭୮ ମସିହାରେ ଡମପଡ଼ା ଯୁବରାଜଙ୍କର ସେ ଗୃହ ଶିକ୍ଷକ ହୋଇଥିଲେ । ଏହି ସମୟ ମଧ୍ୟରେ ଡମପଡ଼ା ରାଜାଙ୍କ ସହିତ ଆଉ ଜଣେ ଗଡ଼ଜାତ ରାଜାଙ୍କର ବିବାଦ ଲାଗିଲା । ଏହି ବିବାଦରେ ପ୍ୟାରୀମୋହନଙ୍କର ମଧ୍ୟସ୍ଥତା ଦରକାର ହେଲା । ପ୍ୟାରୀମୋହନ ଏହି ବିବାଦ ନିଷ୍ପତ୍ତି କରି-ଦେବାରୁ ତାଙ୍କୁ ଦୁଇ ହଜାର ଟଙ୍କା ପୁରସ୍କାର ମିଳିଥିଲା ।

ଫକୀରମୋହନ ସେନାପତି ଡମପଡ଼ାର ବନ୍ଦୋବସ୍ତ କାର୍ଯ୍ୟ ପ୍ୟାରୀମୋହନଙ୍କ ହସ୍ତରେ ଅର୍ପଣ କଲେ । ସେହି ବନ୍ଦୋବସ୍ତ କାର୍ଯ୍ୟ ଚାଲିଲା ବେଳେ ପ୍ୟାରୀମୋହନ ସେଠାରେ ଥିବା ଜଳରେ ସ୍ନାନକରି ପୀଡ଼ିତ ହେଲେ ।

ସେ ଆଉ କାଳବିଳମ୍ବ ନ କରି ସେହି ପୀଡ଼ିତ ଅବସ୍ଥାରେ କଟକକୁ ଚିକିତ୍ସିତ ହେବା ପାଇଁ ପଳାଇ ଆସିଲେ । ପ୍ୟାରୀମୋହନଙ୍କ ଅନ୍ତରଙ୍ଗ ବନ୍ଧୁ ସ୍ୱର୍ଗୀୟ ମଧୁସୂଦନ ରାଓ ପ୍ୟାରୀମୋହନଙ୍କ ପାଖରେ ସଦାବେଳେ ଜଗି ରହିଲେ ଏବଂ ଡାକ୍ତର ଦେଖାଇବା, ଔଷଧ ଆଣି ଖୋଇ ପ୍ୟାରୀମୋହନଙ୍କୁ ଭଲ କରିବା ଦିଗରେ ବହୁତ ଚେଷ୍ଟା କରିଥିଲେ ।

କିନ୍ତୁ ବିଧାତାର ବିଧାନ ଅନ୍ୟଥା ହେବାର ନୁହେଁ । ସ୍ୱର୍ଗୀୟ ମଧୁସୂଦନଙ୍କର ଅକ୍ଳାନ୍ତ ଚେଷ୍ଟା ଅବଶେଷରେ ବ୍ୟର୍ଥ ହୋଇଥିଲା । ଶେଷରେ ୧୮୮୧ ମସିହା ଡ଼ିସେମ୍ବର ମାସ ୨୧ ତାରିଖରେ

ପୁଣ୍ୟାତ୍ମା ପ୍ୟାରୀମୋହନ ତାଙ୍କର ଅତି ପ୍ରିୟବନ୍ଧୁ, ସ୍ୱର୍ଗୀୟ ମଧୁସୂଦନଙ୍କ କୋଳରେ ମୁଣ୍ଡ ରଖି ଚିରଦିନ ପାଇଁ ଇହଧାମରୁ ବିଦାୟ ନେଲେ ।

ଶିକ୍ଷା ଓ ବାଲ୍ୟଜୀବନକୁ ଯଦି ୨୦ ବର୍ଷ ଧରି ନଆଯାଏ, ତେବେ ନଅଟିବର୍ଷ ସେ ଦେଶହିତକର କାର୍ଯ୍ୟରେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଏହି ମାତ୍ର ନଅଟିବର୍ଷ ମଧ୍ୟରେ ସେ ଅତି ଆଶ୍ଚର୍ଯ୍ୟଜନକ ଭାବେ କାର୍ଯ୍ୟ କରିଯାଇ ଦେଶବାସୀଙ୍କର ଚିରସ୍ମରଣୀୟ ହୋଇଅଛନ୍ତି ।

ଏହି ମାତ୍ର ନଅଟିବର୍ଷ ମଧ୍ୟରେ କଟକ ସହରରେ ୧୮୭୫ ମସିହାରେ "ପ୍ୟାରୀମୋହନ ଏକାଡେମୀ" ସ୍ଥାପିତ ହୋଇଅଛି । ଏହି ଅନୁଷ୍ଠାନର ନାମକରଣ ୧୮୮୨ ମସିହା ଡିସେମ୍ବର ମାସ ୩ ତାରିଖରେ ହେଲା । ସେହିବର୍ଷ ଫେବୃୟାରୀ ମାସ ୧୨ ତାରିଖରେ ସ୍କୁଲର ପରିଚାଳନା କମିଟି ଗଠନ ହେଲା । ତା ୧୨-୨-୮୨ରୁ ତା ୨୨-୧୧-୮୩ ଯାଏ ପ୍ୟାରୀମୋହନଙ୍କର ପିତା ଶ୍ରୀଯୁକ୍ତ ଭୁବନମୋହନ ଆଚାର୍ଯ୍ୟ ଏ କମିଟିର ସେକ୍ରେଟେରୀ ଥିଲେ । କିନ୍ତୁ ମରିବା ପୂର୍ବରୁ ପ୍ୟାରୀମୋହନ ତାଙ୍କ ପିତାଙ୍କୁ କହିଥିଲେ, "ବାପା, ଯେ କୌଣସି ମୁହୂର୍ତ୍ତରେ କେହି ସ୍କୁଲର ସମ୍ପାଦକ ହେବାକୁ ଇଚ୍ଛା କଲେ ବିନା ଦ୍ୱିଧାରେ ତାହା ଆପଣ ଛାଡ଼ିଦେବେ ।"

ଜଣେ ୨୯ ବର୍ଷର ଯୁବକ ପକ୍ଷେ ବଳିଷ୍ଠ ନେତୃତ୍ୱ ନେଇ ଦେଶରେ ଏତାଦୃଶ କଳ୍ପନାତୀତ କାର୍ଯ୍ୟଗୁଡ଼ିକରେ ହାତଦେଇ ତାହାକୁ ପରିପୂର୍ଣ୍ଣ କରିବା ଯେ କେତେ କଠିନ ତାହା ସହଜରେ ଅନୁମାନ କରାଯାଇପାରେ ।

ପରବର୍ତ୍ତୀ ବିଷୟ, ଭାରତରେ ଯେଉଁ ଜାତୀୟ କଂଗ୍ରେସ ୧୮୮୫ ମସିହାରେ ଗଢ଼ାଗଲା ଓ ଯାହାର ଫଳରେ ଇଂରେଜ ସରକାର ଏ ଦେଶରୁ ତଡ଼ାଖାଇଗଲେ, ସେ ଅନୁଷ୍ଠାନ ଗଠନ ପୂର୍ବରୁ ୧୮୮୧ ମସିହାରୁ ତତ୍କାଳୀନ ସ୍ୱାଧୀନଚେତା ଏହି ଯୁବକ ପ୍ୟାରୀମୋହନ ଦେଶର ଜନସାଧାରଣଙ୍କର ସ୍ନେହ ମମତା ସବୁକିଛିର ଡୋର ଛିଣ୍ଡାଇ ଦେଇ ଚିରଦିନ ପାଇଁ ଇହଧାମରୁ ବିଦାୟ ନେଲେ ।

ଧୂପଶଳା ଜଳିଯାଏ କିନ୍ତୁ ତାର ସୁଗନ୍ଧ ଆହୁରି କିଛିକ୍ଷଣ ପର୍ଯ୍ୟନ୍ତ ବାତାବରଣକୁ ସୁଗନ୍ଧିତ କରି ରଖେ । ସେହିପରି ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ପୂର୍ବରୁ ପ୍ୟାରୀମୋହନ ଚାଲିଯାଇଥିଲେ କିନ୍ତୁ ତାଙ୍କର ଆଦର୍ଶ ପରବର୍ତ୍ତୀ ଉତ୍କଳରେ ଜାତୀୟ ପ୍ରେରଣା ଦେଇ ଦେବାରେ ଯେ ସାହାଯ୍ୟ ନ କରିଛି ତାହା କିଏ କହିପାରିବ ?

ସେହି ସ୍ୱନାମଧନ୍ୟ ଉଦୀୟମାନ ଯୁବକ ଆଜି ସଂସାରରେ ନାହାନ୍ତି ସତ, କିନ୍ତୁ ତାଙ୍କର ଗୁଣଗାଥା ତଥା କୀର୍ତ୍ତିଗୁଡ଼ିକ ଯେତେବେଳେ ଆମର ଦୃଷ୍ଟିଗୋଚର ହୁଏ ଆମେ ସେତେବେଳେ ତାଙ୍କୁ ସ୍ମରଣ କରୁଥାଉଁ । ଏହିସବୁ ଅକ୍ଷୟକୀର୍ତ୍ତି ଲାଗି ଚିରକାଳ ଧରି ଧରାବକ୍ଷରେ ତାଙ୍କର ନାମ ଇତିହାସ ପୃଷ୍ଠାରେ ଅମର ଅକ୍ଷରରେ ଲିପିବଦ୍ଧ ହୋଇ ରହିଥିବ ।

ଅବଶେଷରେ ଏତିକି କୁହାଯାଇପାରେ ଯେ ସେ କେବଳ ପ୍ୟାରୀମୋହନ ଆଚାର୍ଯ୍ୟ ନ ଥିଲେ । ସେ ଥିଲେ ଆଚାର୍ଯ୍ୟ ପ୍ୟାରୀମୋହନ । ଗୁରୁକୁଳାଶ୍ରମର ଆଚାର୍ଯ୍ୟମାନଙ୍କର ଯେଉଁ ନୈତିକ ପ୍ରଭାବ ଆଶ୍ରମର ଶିଷ୍ୟମାନଙ୍କ ଜୀବନକୁ ଅନୁପ୍ରାଣିତ କରେ, ଆଚାର୍ଯ୍ୟ ପ୍ୟାରୀମୋହନଙ୍କର ସେହି ମହନୀୟ ଚରିତ୍ରବଳ ଆଜି ଉତ୍କଳର ଯୁବ ସମାଜକୁ ସେହିପରି ଅନୁପ୍ରାଣିତ କରୁ—ଏହାହିଁ ଅନ୍ତିମ କାମନା ।

●